

**ସିଦ୍ଧବଳରାମ** “ ଶିରେ ସପ୍ତଫଣା ଶୋହେ ଅନନ୍ତ ମୂରତି
କରଣ ବର୍ଣ୍ଣଇ କ ଶତେ ଚନ୍ଦ୍ର ଜ୍ୟୋତି ” ।

ସିଦ୍ଧ ବଳରାମ ପୂର୍ବେ ଭୀମ ନଗରୀରେ ମହାରାଜା ଅନଙ୍ଗ ଭୀମଦେବଙ୍କ ଦ୍ୱାରା ପୂଜିତ ହେଉଥିଲେ । ବହୁ ଶତାବ୍ଦୀ ଅନ୍ତେ ବେଣା-କିଆ ଭଂଜ ନୃପତି ଚନ୍ଦ୍ର ହଳପାଣିଙ୍କୁ ନିକଟସ୍ଥ ଢେଙ୍କାନାଳକୁ ଆଣି ମଣ୍ଡପ ତୋଳାଇ, ତହିଁରେ ପୂଜା ଅର୍ଚ୍ଚନା କରୁଥିଲେ । ପରବର୍ତ୍ତି କାଳରେ ଭଂଜରାଜଙ୍କ ଅନ୍ତେ ବିଦ୍ୟାଧର ବଂଶ ନରପତି ହରିସିଂହ ୧୭୯୦ ଖ୍ରୀଷ୍ଟାବ୍ଦରେ ମନ୍ଦିର ନିର୍ମାଣି [illegible]ଙ୍କୁ ପୂଜାକଲେ ]

ଢେଙ୍କାନାଳ ମହାଲକ୍ଷ୍ମୀ ପୂଜା

# ସ୍ମରଣିକା



●

ସଂପାଦକ

**ସୁରେନ୍ଦ୍ରନାଥ ମିଶ୍ର**

●

ପ୍ରକାଶନ

ମହାଲକ୍ଷ୍ମୀ ପୂଜା ସ୍ମରଣିକା କମିଟି

ଢେଙ୍କାନାଳ

●

କୁମାର ପୂର୍ଣ୍ଣିମା,
୧୯୮୬

ମୂଲ୍ୟ :
କୋଡ଼ିଏ ଟଙ୍କା

# ମହାଲକ୍ଷ୍ମୀ ପୂଜା ସ୍ମରଣିକା କମିଟି

| | |
|---|---|
| ଶ୍ରୀ ବିଶ୍ୱେଶ୍ୱର ଭୂୟାଁ | ସଭାପତି |
| ଶ୍ରୀ ସୁରେନ୍ଦ୍ରନାଥ ମିଶ୍ର | ସମ୍ପାଦକ |
| ଶ୍ରୀ ସଚ୍ଚିଦାନନ୍ଦ ଦାଶ | ସଦସ୍ୟ |
| ଶ୍ରୀ ଚନ୍ଦ୍ରମୋହନ ସ୍ୱାଇଁ | ସଦସ୍ୟ |
| ଶ୍ରୀ ସାରଙ୍ଗଧର ମହାପାତ୍ର | ସଦସ୍ୟ |
| ଶ୍ରୀ ଗୋବିନ୍ଦଚନ୍ଦ୍ର ସାହୁ | ସଦସ୍ୟ |
| ଶ୍ରୀ ହଳଧର ସାହୁ | ସଦସ୍ୟ |

●

## ସ୍ମରଣିକା ପ୍ରକାଶନ ପୃଷ୍ଠପୋଷକ

ଶ୍ରୀଯୁକ୍ତ ନଟବର ଦେବତା
ଶ୍ରୀଯୁକ୍ତ ସାଗରମଲ୍ଲ ଅଗ୍ରୱାଲ୍
ଶ୍ରୀଯୁକ୍ତ ଗିରବର ସାହୁ
ଶ୍ରୀଯୁକ୍ତ ବୈରାଗୀ ସାମଲ
ଶ୍ରୀଯୁକ୍ତ ନନ୍ଦନଚନ୍ଦ୍ର ନାରାୟଣ ଦାସ
ଶ୍ରୀଯୁକ୍ତ ଆଶୁତୋଷ ଦାସଗୁପ୍ତ
ଶ୍ରୀଯୁକ୍ତ ଶ୍ରୀଧର ସାହୁ

●

## କୃତଜ୍ଞତା

ଯେଉଁ ସରକାରୀ ଏବଂ ବେସରକାରୀ କର୍ତ୍ତୃପକ୍ଷ 'ମହାଲକ୍ଷ୍ମୀ ପୂଜା' ସ୍ମରଣିକାରେ ବିଜ୍ଞାପନ ପ୍ରଦାନ କରି ଆମ ସହିତ ସହଯୋଗ କରିଛନ୍ତି, ସେମାନଙ୍କ ପାଖରେ ସ୍ମରଣିକା ପ୍ରକାଶନ କମିଟି କୃତଜ୍ଞତା ଜ୍ଞାପନ କରୁଛି ।

ସମ୍ପାଦକ

●

# * ସମ୍ପାଦକୀୟ *

ମାତା ଭୂମିଃ ପୁତ୍ରୋଽହଂ ପୃଥିବ୍ୟାଃ ।

—ଅଥର୍ବ ବେଦ

ଅର୍ଥାତ୍— ଭୂମି ମାତା ଅଟେ ଏବଂ ମୁଁ ଏହି ପୃଥିବୀର ପୁତ୍ର ଅଟେ ।

ଏତାଦୃଶ ଭାବନା ଆମ୍ଭ ମାନଙ୍କ ହୃଦୟକୁ ସ୍ପର୍ଶ କଲେ ଏ ମାଟିର କଲ୍ୟାଣ ସାଧିତ ହେବ-- ତାର ବନମଧ୍ୟରେ ଜନ୍ମଭୂମି ଦ୍ୱାରା ଏ ସମାଜ ଉପକୃତ ହେବ । ଆଜି ଆମ ସମାଜରେ ଏହିଭଳି ଭାବନାର ଅଭାବ ହେତୁ ନିଜ ନିଜ ଅଞ୍ଚଳ ପ୍ରତି ନୂତନ ପ୍ରବର୍ତ୍ତିତର ଅନୁରାଗ ତୃଷ୍ଣା ଅନୁଭୂତ ହେଉଛି ।

ଗୋଟିଏ ଉଦାହରଣ ଦେବା — ଢେଙ୍କାନାଳର ଐତିହାସିକ "ମହାଲକ୍ଷ୍ମୀପୂଜା" ପରମ୍ପରା ପ୍ରତି ଦୃଷ୍ଟି ଦେବାକୁ ଜଣେ ହୃଦୟବାନ ଚାଷୀଆ ଲୋକର ଅଭାବ । ଆମେ ଆଜି ସାହିବାସିନ୍ଦା, ବଜାର ଲୋକ ହୋଇପଡ଼ିଛେ — ଘଟେବୋଟୋ ଭାବେ ଏଇଟା ଆମ ଢେଙ୍କାନାଳ, ଆମ ମାଆ ମାଟି— ଏହାର ପରମ୍ପରା ଓ ଇତିହାସକୁ ଆଦର୍ଶ କରି ଅନ୍ୟ ଆଗରେ ଉପସ୍ଥାପନ କରିବା । ଏହି ଭାବନା ଆମ୍ଭମାନଙ୍କ ମନରେ ଉଦ୍ରେକ ହେବାର କଥା । ଶ୍ରେଷ୍ଠ ଶ୍ରେଷ୍ଠ କଥା, କ୍ଷୁଦ୍ର ପରିବେଶ ପରିସୀମାକୁ ଭୁଲି ଆମେ ସମସ୍ତେ ଢେଙ୍କାନାଳ ବାସୀ । ସବୁ ନେତା ଆମର-ଏଥିରୁ କିଏ ସାନଭାଇ ତ ଆଉ କିଏ ବଡ଼ଭାଇ । ଏତାଦୃଶ ଭାବନା ଆମ ମନକୁ ଆନ୍ଦୋଳିତ କରୁନାହିଁ କାହିଁକି ? ଏହାର ଉତ୍ତରରେ ବୁଦ୍ଧିଜୀବୀ ଓ ବୟସ୍କ ଲୋକେ କହନ୍ତି-- କେତେକ ଲୋକ ଅଯଥା ନିଜ ଶ୍ରେଷ୍ଠତ୍ୱ ଓ ବଡ଼ିମାକୁ ଦେଖାଇଦେବା ପାଇଁ ନିଜର ଭ୍ରମ ଧାରଣାକୁ ଅପର ଉପରେ ଯବରଦସ୍ତ ଲଦି ଦେବାକୁ ଚାହାନ୍ତି ଏବଂ ଏହାକୁ କେତେକ ପ୍ରତ୍ୟାଖ୍ୟାନ କରି ନିଜ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା

କରିବାରେ ଚେଷ୍ଟିତ । ଏଥିରୁ ଗୁଡ଼ିବାଘ ପୁରାତନର ଅସ୍ୱୀକୃତ ପ୍ରଗତିଶୀଳ ଯୁବପ୍ରାଣରେ ଦ୍ୱନ୍ଦ ସୃଷ୍ଟି ହୁଏ । ଏହାର ସମାଧାନ ପାଇଁ ଆମେ ସମସ୍ତେ ମଧ୍ୟ ସାନ୍ତ ସେଇ ବେଦୋକ୍ତ ଅମର ବାଣୀ ଉଚ୍ଚାରଣ କରନ୍ତେ—

"ମାତା ଭୂମିଃ ପୁତ୍ରୋ ଅହଂ ପୃଥିବ୍ୟାଃ ।"

ଅର୍ଥାତ୍— ପୁତ୍ରକୁ ହିଁ ମାତା ଠାରୁ ପୋଷଣ ପ୍ରାପ୍ତ ହେବାର ଅଧିକାର । ମାତା-ପୁତ୍ର ସମ୍ବନ୍ଧର ଅନୁଭୂତ ରାଷ୍ଟ୍ରୀୟତାର ସବୁଠାରୁ ଦୃଢ଼ଭିତ୍ତି । ଏ ପୃଥିବୀ ମାଟି, ପଥରର ଗଦା ନୁହେଁ । ଏହାର ଅଞ୍ଚଳରେ ଅନେକ ଶକ୍ତିଧାରା ପ୍ରବାହିତ। ଯେ ପୃଥିବୀପୁତ୍ର ତାକୁ ହିଁ ଏହା ପ୍ରାପ୍ତ ହୁଏ ।

ଏହାହିଁ ଭାରତୀୟ ସଂସ୍କୃତି । ଆଜିକାଲି ଲୋକ ଭାରତୀୟ ସଂସ୍କୃତି-କୁ ଭୁଲି ବସିଲେଣି । ବେଦରେ ଅଛି ଯେ- ସଂସ୍କୃତିର ଲୋପରୁ ହିଁ ରାଷ୍ଟ୍ର ଓ ଭୂମି ଲୋପପାଏ । × × ×

ଆମେ ଢେଙ୍କାନାଳ ବାସୀ ଯଦି ଆମର ମୌଳିକ ସଂସ୍କୃତି, ଇତିହାସ ଏବଂ ପରମ୍ପରା ପ୍ରତି ସଚେତନ ନହେବା, ତେବେ ଆମକୁ ବେଦୋକ୍ତ ବାଣୀ— "ସଂସ୍କୃତିର ଲୋପରୁ ହିଁ ରାଷ୍ଟ୍ର ଓ ଭୂମି ଲୋପପାଏ"— ଦଶା ଭୋଗ କରିବାକୁ ପଡ଼ିବ । × × ×

ଗତ ବର୍ଷ ଢେଙ୍କାନାଳର ଐତିହାସିକ ମହାଲକ୍ଷ୍ମୀ ପୂଜା ସ୍ମରଣିକା ପ୍ରକାଶନ କାର୍ଯ୍ୟରେ ଆମେ ବିଭିନ୍ନ ମହାଲକ୍ଷ୍ମୀ ପ୍ରତିଷ୍ଠାନ ସହିତ ବାରମ୍ବାର ସମ୍ପର୍କ ରକ୍ଷା କରିଥିଲେ ମଧ୍ୟ ଆଶାନୁରୂପ ସହଯୋଗ ନପାଇବାରୁ ଏହାର କଳେବର ସମୃଦ୍ଧ କରିବାରେ ଯେତିକ ଯତ୍ନ ନେବାର କଥା ତାହା ସମ୍ଭବ ହୋଇ ପାରିଲା ନାହିଁ ସତ କିନ୍ତୁ ଆଗାମୀ ବର୍ଷ ମାନଙ୍କରେ ନିଶ୍ଚିତ ରୂପେ ସମସ୍ତ ଲକ୍ଷ୍ମୀପୂଜା ପ୍ରତିଷ୍ଠାନର ସହଯୋଗ ପାଇବୁ ବୋଲି ଆଶା ରଖୁଛୁ ।

ଜୟହିନ୍ଦ୍

ଶ୍ରୀ ସୁରେନ୍ଦ୍ରନାଥ ମିଶ୍ର



# ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ସ୍ତବ

ନମସ୍ତେଽସ୍ତୁ ମହାମାୟେ ଶ୍ରୀପୀଠେ ସୁର ପୂଜିତେ,
ଶଙ୍ଖ ଚକ୍ର ଗଦା ହସ୍ତେ ମହାଲକ୍ଷ୍ମୀ ନମଃସ୍ତୁତେ । ୧ ।
ନମସ୍ତେ ଗରୁଡାରୁଢେ କୋଲାସୁର ଭୟଙ୍କରୀ,
ସର୍ବପାପ ହରେ ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ । ୨ ।
ସର୍ବଜ୍ଞେ ସର୍ବବରଦେ ସର୍ବଦୁଷ୍ଟ ଭୟଙ୍କରୀ,
ସର୍ବ ଦୁଃଖ ହରେ ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ । ୩ ।
ସିଦ୍ଧି ବୁଦ୍ଧି ପ୍ରଦେ ଦେବୀ ଭୁକ୍ତି ମୁକ୍ତି ପ୍ରଦାୟିନୀ,
ମନ୍ତ୍ରମୂର୍ତ୍ତି ସଦା ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ । ୪ ।
ଆଦ୍ୟନ୍ତ ରହିତେ ଦେବୀ ଆଦ୍ୟାଶକ୍ତେ ମାହେଶ୍ୱରୀ,
ଯୋଗେନ ଯୋଗ ସମ୍ଭୂତେ ମହାଲକ୍ଷ୍ମୀ ନମଃସ୍ତୁତେ । ୫ ।
ସ୍ଥୂଳ ସୂକ୍ଷ୍ମ ମହାରୌଦ୍ରେ ମହାଶକ୍ତେ ମହୋଦରେ,
ମହାପାପ ହରେ ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ । ୬ ।
ପଦ୍ମାସନସ୍ଥିତେ ଦେବୀ ପରଂବ୍ରହ୍ମ ସ୍ୱରୂପିଣୀ,
ପରମେଷ୍ଠୀ ଜଗତମାତ ମହାଲକ୍ଷ୍ମୀ ନମଃସ୍ତୁତେ । ୭ ।
ଶ୍ୱେତାମ୍ବର ଧରେ ଦେବୀ ନାନାଲଙ୍କାରେ ଭୂଷିତେ .
ଜଗତସ୍ଥିତେ ମହାମାୟୀ ମହାଲକ୍ଷ୍ମୀ ନମଃସ୍ତୁତେ । ୮ ।
ମହାଲକ୍ଷ୍ମ୍ୟାଷ୍ଟକଂ ସ୍ତୋତ୍ରଂ ଯଃ ପଠେତ୍ ଭକ୍ତିମାନ୍ନରଃ,
ସର୍ବସିଦ୍ଧି ମବାପ୍ନୋତି ରାଜ୍ୟଂ ପ୍ରାପ୍ନୋତି ସର୍ବଦା । ୯ ।
ଏକକାଲଂ ପଠେନ୍ନିତ୍ୟଂ ମହାପାପଂ ବିନାଶନଂ,
ଦ୍ୱିକାଲଂ ଯଃ ପଠେନ୍ନିତ୍ୟଂ ଧନଧାନ୍ୟ ସମନ୍ୱିତଃ । ୧୦ ।
ତ୍ରିକାଳଂ ଯଃ ପଠେନ୍ନିତ୍ୟଂ ମହାଶତ୍ରୁ ବିନାଶନଂ
ମହାଲକ୍ଷ୍ମୀ ଭବେନ୍ନିତ୍ୟଂ ପ୍ରସନ୍ନା ବରଦାଶୁଭା । ୧୧ ।
ଓଁ ଇନ୍ଦ୍ର କୃତଂ ଶ୍ରୀ ମହାଲକ୍ଷ୍ମୀଷ୍ଟକଂ ସ୍ତବଂ ସଂପୂର୍ଣ୍ଣଂ ।।

—*—


ସୂଚୀପତ୍ର







ସ୍ମୃତି ଅଞ୍ଜଳି

ଶ୍ରୀ ଶ୍ରୀ ମଉଡ଼ମଣି ରାଜଲକ୍ଷ୍ମୀ "ବୃନ୍ଦମେଡ଼"

ପ୍ରାୟତଃ ୧୯୬୫ ମସିହାରେ ମିନା ବଜାରପୂଜା ପ୍ରତିଷ୍ଠାନ ଦ୍ୱାରା ନିର୍ମିତ "ବୃନ୍ଦମେଡ଼"

ତା ୨।୧୧।୭୭ ରେ ଧ୍ୱଂସ ହୋଇଯାଇଅଛି ।



ଶ୍ରୀ ଗୁଣ୍ଡିଚା ଯାତ୍ରା- ଢେଙ୍କାନାଳ-

ପଥଭବେ "ଆମିଦେବ" ରଥଭବେ 'ଆମି"
ମୂର୍ତ୍ତିଭବେ "ଆମିଦେବ" ହାସେ ଅନ୍ତର୍ଯ୍ୟାମୀ ।
—ରବିନ୍ଦ୍ରନାଥ ଠାକୁର-



# ମହାଲକ୍ଷ୍ମୀ ପୂଜା


**ଡକ୍‌ଟର ରମେଶ ପ୍ରସାଦ ମହାପାତ୍ର**

ଏମ୍‌. ଏ. ଡି.ଲିଟ୍‌


ଓଡ଼ିଶାରେ ପ୍ରଚଳିତ ବହୁ ପୂଜା ପାର୍ବଣ ମଧ୍ୟରେ ମହାଲକ୍ଷ୍ମୀ ପୂଜା ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଗୁରୁବାର ଦିନ ଲକ୍ଷ୍ମୀ ଦେବୀଙ୍କ ଆବିର୍ଭାବ ହେତୁ ମାସର ପ୍ରତ୍ୟେକ ଗୁରୁବାରକୁ ଲକ୍ଷ୍ମୀବାର ବୋଲି କୁଳବଧୂମାନେ ସମ୍ମାନ କରିଥା'ନ୍ତି । ଏହାଛଡ଼ା ମାର୍ଗଶିର ମାସର ଗୁରୁବାର ଓ ସୁଦଶାବ୍ରତ ଦିନମାନ ଅନ୍ୟାନ୍ୟ ଗୁରୁବାର ଦିନ ମାନଙ୍କ ଠାରୁ ଅଧିକ ପବିତ୍ର ଭାବରେ ପାଳନ କରାଯାଏ । ସୁଦଶାବ୍ରତ ଦିନ ସ୍ତ୍ରୀ ଲୋକମାନେ ପ୍ରତିଜ୍ଞା କରି ସୂତ୍ର ନିର୍ମିତ ଯେଉଁ ଦଶଗଣ୍ଠି ସମ୍ବଳିତ ବ୍ରତ ଦକ୍ଷିଣ ହସ୍ତର ବାହୁରେ ବନ୍ଧନ କରିଥାନ୍ତି ତାହାର ମୂଳରେ ସନ୍ତୋଷ, କ୍ଷମା, ଦୟା, ଶୌଚ, ଜ୍ଞାନ, ବିଦ୍ୟା, ସତ୍ୟ, ଅକ୍ରୋଧ, ଇନ୍ଦ୍ରିୟ ନିଗ୍ରହ ଓ ସଞ୍ଜମ ଆଦି ଦଶ ଲକ୍ଷଣ ଯେ ବିଦ୍ୟମାନ ଏହା ବୋଧେ କାହାକୁ ଅବିଦିତ ନଥିବ ।

ପୂର୍ବେ ଯେଉଁ ଲକ୍ଷ୍ମୀ ଠାକୁରାଣୀ ମାଣ, ଧାନ ଦ୍ୱାରା ଚିହ୍ନିତ କରାଯାଇ ଗୃହ କୋଣରେ ନାନା କୀର୍ତ୍ତନ ଓ ପିଠାପଣାରେ ପୂଜା ହେଉଥିଲେ, ବର୍ତ୍ତମାନ ତାହାର ଉତ୍ତରୋତ୍ତର ଉନ୍ନତି ବା ଅବନତି ହୋଇ ଦଶହରା, ବିଶ୍ୱକର୍ମା ଓ କାଳୀପୂଜା ସହିତ ତାଳ ଦେଇ ସହର ବଜାର ତଥା ବ୍ୟବସାୟ କେନ୍ଦ୍ର ମାନଙ୍କରେ ବହୁ ଆଡ଼ମ୍ବର

ସହକାରେ ମୃତ୍ତିକା ନିର୍ମିତ ମୂର୍ତ୍ତି ଦ୍ୱାରା ଅନ୍ୟୁନ ଏକ ସପ୍ତାହ ପର୍ଯ୍ୟନ୍ତ ପୂଜା ହେଉଅଛି । ଫଳରେ ଲକ୍ଷ୍ମୀ ଦେବୀଙ୍କର ଆବିର୍ଭାବ ଉଦ୍ଦେଶ୍ୟ ଓ ମହତ୍ତ୍ୱର ଘୋର ଅବହେଳାରଣା କରାହେବା ସଙ୍ଗେ ସଙ୍ଗେ ସାଧାରଣ ଗୃହସ୍ଥର ଧର୍ମଭାବ ବହୁଳ ଭାବରେ କମିଯିବାରୁ ଅନେକ ବ୍ୟଭିଚାର ଓ ଅସାମାଜିକ କାଣ୍ଡର ଉଦ୍‌ଭବ ହେଉଅଛି ।

ପ୍ରସ୍ତୁତ ପ୍ରବନ୍ଧରେ ଓଡ଼ିଶାର ଘରେ ଘରେ ପ୍ରଚଳିତ ଓଡ଼ିଆରେ ପ୍ରକାଶିତ ମହାଲକ୍ଷ୍ମୀ ପୁରାଣର ଅବଲମ୍ବନରେ ଲକ୍ଷ୍ମୀଦେବୀଙ୍କର ଭୂମିକା ବିଭିନ୍ନ ନାମ, ବେଶଭୂଷା, ଆୟୁଧ, ବାହନ ତଥା ଅନ୍ୟାନ୍ୟ ଦେବଦେବୀଙ୍କ ସହ ସମ୍ପର୍କ-ବିଷୟ ଆଲୋଚନା କରିବା ସମୟରେ ମଧ୍ୟ ଗଜଲକ୍ଷ୍ମୀ ପୂଜାର ପରମ୍ପରା, ଐତିହାସିକ ପ୍ରତ୍ନତାତ୍ତ୍ୱିକ ଓ ବହୁ ପୌରାଣିକ ଗ୍ରନ୍ଥରୁ ମିଳୁଥିବା ପ୍ରମାଣ ଗୁଡ଼ିକ ଉଦ୍ଧାର କରାଯାଇଛି । ଲକ୍ଷ୍ମୀ ବା ଗଜଲକ୍ଷ୍ମୀ ପୂଜାପଦ୍ଧତି ଯେ କେବଳ ହିନ୍ଦୁ ମାନଙ୍କ ମଧ୍ୟରେ ବହୁଳ ଭାବରେ ପ୍ରସାରଲାଭ କରିଥିଲା ତା ନୁହେଁ ଜୈନ ଓ ବୌଦ୍ଧମାନେ ଲକ୍ଷ୍ମୀଦେବୀଙ୍କୁ ଶୁଭଦାୟିନୀ, ସମ୍ପଦଶାଳିନୀ, ଶୁଭାକାଂକ୍ଷିଣୀ, ପବିତ୍ର ଓ ସୌନ୍ଦର୍ଯ୍ୟମୟୀ ଦେବୀ ଭାବରେ ଆରାଧନା କରିଥାନ୍ତି ।

ଦେବତା ଓ ଅସୁରଗଣଙ୍କ ଦ୍ୱାରା ସମୁଦ୍ର ମନ୍ଥନ ସମୟରେ ଅନ୍ୟାନ୍ୟ ବହୁ ମୂଲ୍ୟବାନ ପଦାର୍ଥର ଉଦ୍‌ଭବ ସହିତ ଲକ୍ଷ୍ମୀଦେବୀଙ୍କର ଆବିର୍ଭାବ ପ୍ରାୟ ଅଧିକାଂଶ ପୁରାଣ ମାନଙ୍କରେ ବିଶଦ ଭାବରେ ବର୍ଣ୍ଣନା କରାଯାଇଅଛି । କ୍ଷୀର ସମୁଦ୍ରରୁ ଜାତ ହୋଇଥିବାରୁ ତାଙ୍କୁ ବାରିଜା, କ୍ଷୀରାବ୍ଧିତନୟା, ସିନ୍ଧୁଜା ବୋଲି ମଧ୍ୟ କହିଥାନ୍ତି । ଲକ୍ଷ୍ମୀ ସହସ୍ର ନାମରୁ ନିମ୍ନୋକ୍ତ ନାମ ଗୁଡ଼ିକ ତାଙ୍କ ସହିତ ବିଶେଷ ଭାବରେ ସମ୍ପୃକ୍ତ ବୋଲି ଓଡ଼ିଆ ପୁରାଣକାର ମାନେ ବହୁଳ ଭାବରେ ଉଲ୍ଲେଖ କରିଛନ୍ତି । ଯଥା:— ଶ୍ରୀ ହରିପ୍ରିୟା, ଭଦ୍ରା, ମହାଲକ୍ଷ୍ମୀ, କ୍ଷୀରାବ୍ଧି-ତନୟା, ପୁଣ୍ୟଜନପ୍ରିୟା, ପୁଣ୍ୟକୀର୍ତ୍ତିଶାଳୀ, ଜୟପ୍ରଦା, ତୀର୍ଥପୁଣ୍ୟା, ତୀର୍ଥରୂପା, ରୁକ୍ମିଣୀ, କୃଷ୍ଣବଲ୍ଲଭା, ସନାତନୀ, ସତ୍ୟଭାମା, ହେମାଙ୍ଗଦା, ହେମରୂପା, ସୁଧୀରା, ରମା, ଇନ୍ଦିରା, ମହାଦାସୀ, ହରଚଣ୍ଡୀ, ମହାମାୟା, ଦରିଦ୍ରନାଶିନୀ, ଅଷ୍ଟଐଶ୍ୱର୍ଯ୍ୟଦାୟିନୀ, ବାସେଲୀ, ମଞ୍ଜୁଳା ଶ୍ୟାମଳା, ଲୋକମାତା, ମଙ୍ଗଳା, ସୁନନ୍ଦା, ସୁଦନ୍ତା, କୌମାରୀ,

ବୈଷ୍ଣବୀ, ଜଗତମାତା, ଜଗଦ୍ଧାତ୍ରୀ, ଅପରାଜିତା, ଉଲ୍ଲୁକବାହିନୀ, ଶାର୍ଙ୍ଗିଣୀ, ଶାରଙ୍ଗୀ । ଆହୁରି ମଧ୍ୟ ପଦ୍ମ ସହିତ ତାଙ୍କର ନିବିଡ଼ ସମ୍ପର୍କ ଥିବାରୁ ତାଙ୍କୁ ପଦ୍ମାଳୟା, ପଦ୍ମସ୍ଥା, ପଦ୍ମହସ୍ତା, ପଦ୍ମମୟୀ, ପଦ୍ମନେତ୍ରୀ, ପଦ୍ମବାସିନୀ, କମଳା ଓ କମଳଲୋଚନା ଆଦି ନାମରେ ନାମିତ କରା ହୋଇଅଛି ।

"କମଳବର୍ଣ୍ଣି କୋମଳ ସର୍ବାଙ୍ଗ ଶୋଭିତା
କମଳ ଚରଣ ପୁଣି ଚମ୍ପୂବେନି ପତା ।
ଯୁଗଳ କମଳ ପାଦ କମଳ ଆନନ
ବଦ୍ଧ୍ୟତ୍ରିବରଣୀ ନାନା ରତନେ ଭୂଷଣ ।
ଯୁଗଳ କମଳ ଶୋହେ କର କମଳରେ
ବାହାରିଲେ ଚତୁର୍ଦ୍ଦୋଳେ ବରୁଣ କନ୍ଦରେ ।"

ଅଂଶୁମୋଦ ଭେଦାଗମ ଶାସ୍ତ୍ର ମତରେ 'ଲକ୍ଷ୍ମୀ ପଦ୍ମାସନାସୀନା ଅମ୍ବୁଜ ଦକ୍ଷିଣ ହସ୍ତେ' ଅର୍ଥାତ୍ ଲକ୍ଷ୍ମୀଦେବୀ ପଦ୍ମପୁଷ୍ପର ଆସନରେ ଉପବିଷ୍ଟ ହୋଇ ଦକ୍ଷିଣ ହସ୍ତରେ ପଦ୍ମପୁଷ୍ପ ଧାରଣ କରିଥାନ୍ତି । ତାଙ୍କର ବର୍ଣ୍ଣ ହେମ । ବାମ ହସ୍ତରେ ବିଲ୍ୱଫଳ ଓ ସେ ପଦ୍ମଲୋଚନା ହାସ୍ୟମୟୀ ଓ ମୂଲ୍ୟବାନ ଅଳଙ୍କାରରେ ବିଭୂଷିତା । ବିଷ୍ଣୁ ଧର୍ମୋତ୍ତର ପୁରାଣ ମତରେ ତାଙ୍କର ଶରୀର କୃଷ୍ଣବର୍ଣ୍ଣ ଥିବା ସ୍ଥଳେ ଶିଳ୍ପ ରତ୍ନରେ ଶୁଭ୍ର-ବର୍ଣ୍ଣ ବୋଲି ଉଲ୍ଲେଖ କରାଯାଇଛି । ଉପର ଲିଖିତ ଶାସ୍ତ୍ରମତେ ତାଙ୍କର ଦୁଇ କିମ୍ବା ଚତୁଃହସ୍ତର ଅବତାରଣା ମଧ୍ୟ କରାଯାଇଛି । ଦୁଇହସ୍ତ ବିଶିଷ୍ଟା ମୂର୍ତ୍ତି ହସ୍ତରେ ପଦ୍ମପୁଷ୍ପ ଓ ବିଲ୍ୱଫଳ କିମ୍ବା କେବଳ ପଦ୍ମପୁଷ୍ପ ଅଥବା ପଦ୍ମପୁଷ୍ପ ଓ ବରଦା ମୁଦ୍ରାରେ ଦେଖାଯାଏ । ଚତୁଃହସ୍ତ ବିଶିଷ୍ଟ ମୂର୍ତ୍ତି ଅଷ୍ଟଦଳ-ପଦ୍ମ ଉପରେ ଆସୀନା ହୋଇ ପଦ୍ମପୁଷ୍ପ, ବିଲ୍ୱଫଳ, ଅମୃତଭାଣ୍ଡ ତଥା ଶଙ୍ଖ ଧାରଣ କରିଥାନ୍ତି ।

ଅନ୍ୟ ପକ୍ଷରେ ପଦ୍ମାସୀନା କିମ୍ବା ଦଣ୍ଡାୟମାନା ଲକ୍ଷ୍ମୀ ମୂର୍ତ୍ତିଙ୍କ ମସ୍ତକ ଉପରେ ପରସ୍ପର ଆଡ଼କୁ ମୁଖ କରିଥିବା ଐରାବତ ଓ ପୁଣ୍ଡରୀକ ନାମକ କରୀଯୁଗଳ ସେମାନଙ୍କ ଶୁଣ୍ଢ ଦ୍ୱାରା ଦୁଇଗୋଟି ଘଟ ଜଳପୂର୍ଣ୍ଣ

କଳସ ଉତ୍ତୋଳନ କରି ଲକ୍ଷ୍ମୀଦେବୀଙ୍କୁ ସ୍ନାନ କରାଉଥାନ୍ତି । ସ୍ଥଳ ବିଶେଷରେ ହସ୍ତଦ୍ୱୟ ମଧ୍ୟ ପଦ୍ମପୁଷ୍ପ ଉପରେ ଦଣ୍ଡାୟମାନ ହୋଇଥିବା ଦେଖାଯାଏ ।

"ଅଇରାବତ ସହିତ ହସ୍ତୀ ପୁଣ୍ଡରୀକ
ଥୋରହସ୍ତେ ଇନ୍ଦ୍ରକୁମ୍ଭ ଧରିଣ ଉଗ୍ରକ ।
ଯତନରେ ଲକ୍ଷ୍ମୀଙ୍କର ଶିରରେ ଢାଳନ୍ତିଲେ
ତୃପ୍ତି ସେ ସୁରଭି ପଞ୍ଚାମୃତ ବୃଷ୍ଟି କଲେ ।

ଉପରୋକ୍ତମତେ ବର୍ଣ୍ଣିତ ମୂର୍ତ୍ତି ଗୁଡିକୁ ଗଜଲକ୍ଷ୍ମୀ ବୋଲି ଆଖ୍ୟାୟିତ କରାଯାଏ । ଏ ସ୍ଥଳରେ ମହାଲକ୍ଷ୍ମୀ ପୁରାଣମତେ ଲକ୍ଷ୍ମୀ ଠାକୁରାଣୀଙ୍କ ବେଶ ବର୍ଣ୍ଣନା ବୋଧେ ଅପ୍ରାସଙ୍ଗିକ ହେବନାହିଁ । ଅବଶ୍ୟ ଚନ୍ଦ୍ରମୁଖ କମ୍ବା ଅମ୍ଳାନ ବସନକୁ କାରିଗର ମୃତ୍ତିକା ନିର୍ମିତ ମୂର୍ତ୍ତିରେ ଦର୍ଶାଇ ପାରିବ ନାହିଁ କିନ୍ତୁ କେଶବିନ୍ୟାସ, ଅଳଙ୍କାର ଓ ବସ୍ତ୍ରାଦିର ସଂଯୋଗ ଯେ ବହୁ କଷ୍ଟ ସାଧରେ କରାହୁଏ ଏଥିରେ ସନ୍ଦେହ ନାହିଁ । ଲକ୍ଷ୍ମୀଦେବୀଙ୍କର ଚନ୍ଦ୍ର ସଦୃଶ ମୁଖ ଶୁକଚଞ୍ଚୁ ପ୍ରାୟ ନାସିକା, କଳା ଭ୍ରମରପରି କେଶ ଗୁଚ୍ଛ, ନୀଳକମଳ ସଦୃଶ ନେତ୍ରଯୁଗଳ, ବାଳଅରୁଣ ଜିଣି ଓଷ୍ଠ, ତଥା ରକ୍ତଜବାନିନ୍ଦ ପାଦଯୁଗଳର ପରିକଳ୍ପନା କରାଯାଇ-ଥାଏ । ଅଳଙ୍କାର ଓ ଅନ୍ୟାନ୍ୟ ଆଭରଣ ମଧ୍ୟରେ କର୍ଣ୍ଣରେ ସୁବର୍ଣ୍ଣ ଜଡ଼ାଉ ଓ କାପ, ନାସିକାରେ ମାଣିକ୍ୟ ବସଣୀ, କମ୍ବୁ ସଦୃଶ ଗ୍ରୀବାରେ ମନୋହର ତ୍ରିବଳୀ, ଗଣ୍ଡରେ ମକର କୁଣ୍ଡଳ ଗଳାରେ ନବରତ୍ନମାଳା, ଶିରରେ ଅଳକା ଓ ମୁକୁଟ, ବାହୁରେ ଚନ୍ଦ୍ରତାଟଙ୍କ, ହସ୍ତରେ ରତ୍ନଚୂଡ଼ା, ବକ୍ଷରେ ମୋତିହାର, ଉଦରରେ ତ୍ରିବଳୀରେଖା, କଟିରେ କିଙ୍କିଣୀ, ନିତମ୍ବରେ ଅଷ୍ଟଚନ୍ଦ୍ରବେଷ୍ଟିତ ଚନ୍ଦ୍ରହାର, ଶ୍ରୀପଦରେ ରତ୍ନବଳା, ଉରରେ କାଞ୍ଚଳି ଓ ସମଗ୍ର ଶରୀରରେ ଅମ୍ଳାନ ବସନ ପରିଶୋଭିତ । ଉଲ୍ଲିଖିତ ଅଳଙ୍କାର ଗୁଡ଼ିକ ସାଧାରଣରେ ବର୍ତ୍ତମାନ ଦୁଷ୍ପ୍ରାପ୍ୟ ହେଲେ ମଧ୍ୟ କାଳକ୍ରମେ ସେଗୁଡିକ ଯେ ଲୋକ ଲୋଚନରୁ ଅପସରି ଯିବ, ଏଥିରେ ସନ୍ଦେହ ନାହିଁ । ପୁରୀର ଶ୍ରୀ ଜଗନ୍ନାଥ ଭଣ୍ଡାର ଘରେ ବର୍ଣ୍ଣିତ ବହୁ ପୁରାତନ ଅଳଙ୍କାର ରକ୍ଷିତ ଥିବାର ପ୍ରମାଣ ପ୍ରକାଶିତ ରିପୋର୍ଟ ମାନଙ୍କରୁ ମିଳୁଅଛି । ସେଗୁଡିକ

ସମ୍ବନ୍ଧରେ ବିଶେଷ ଗବେଷଣା କରି ଆମର ପୂର୍ବ ପରମ୍ପରା ଫେରାଇ ଆଣିବା ଗବେଷକ ମାନଙ୍କର କାମ୍ୟ ।

ଅନ୍ୟାନ୍ୟ ଦେବଦେବୀଙ୍କ ସଦୃଶ୍ୟ ଲକ୍ଷ୍ମୀଙ୍କ ବାହାନ ବିଷୟରେ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର ପ୍ରାଣୀର କଳ୍ପନା କରାଯାଇଛି । ଓଡ଼ିଶାରେ ପ୍ରତିବର୍ଷ ଯେଉଁ ଲକ୍ଷ୍ମୀ ବିଗ୍ରହ ସବୁ ନିର୍ମାଣ କରାଯାଇ ପୂଜା କରାଯାଉଛି, ତାହା ଗଜଲକ୍ଷ୍ମୀ ହୋଇଥିଲେ ମଧ୍ୟ ଉଲ୍ଲୁକ ବାହାନ ବିଶିଷ୍ଟ । ଉଲ୍ଲୁକ ବା ପେଚକ ବହୁ ପ୍ରକାର ଥିଲେ ମଧ୍ୟ ସାଧାରଣତଃ ଦୁଇପ୍ରକାର ଦୃଷ୍ଟାନ୍ତ ବହୁଳ ଭାବରେ ମିଳେ । ଲକ୍ଷ୍ମୀଙ୍କର ବାହାନ ରୂପେ ଯାହାକୁ କଳ୍ପନା କରାଯାଏ, ତାକୁ ଲକ୍ଷ୍ମୀ ପେଚ୍ଚ ବା ସାର (Burn Owl) କହିଥାନ୍ତି । ଏହାର ମୁଖ ଓ ଚକ୍ଷୁ ଗୋଲାକାର । ସେମାନେ ପୁରୁଣା ଘର, ଧାନ ଅମାର, ଘଞ୍ଚ ଜଙ୍ଗଲ ବା ଗହଳିଆ ଆମ୍ବ ତୋଟାରେ ରହିବାକୁ ଭଲପାଆନ୍ତି । ଯାହାର କୂଜନରେ ଅଶୁଭ ଲକ୍ଷଣର ସୂଚନା ମିଳିବା ସଙ୍ଗେ ସଙ୍ଗେ ମନରେ ଭୟ ସ୍ୱତଃ ଜାତହୁଏ; ତାହାକୁ କାଳ ପେଚ୍ଚ (Horned Owl) ବୋଲି କହନ୍ତି । ଏହାର ମସ୍ତକ ଉପରେ ଶିଙ୍ଘଭଳି ଦୁଇଗୋଟି ଚୂଳ ଥାଏ । ସାଧାରଣ ଭାବରେ ଖୋଲା ପଡ଼ିଆ ଧାନକ୍ଷେତ ବା ଅଘଞ୍ଚ ତୋଟାମାଳରେ ଏମାନେ ଦେଖାଯାନ୍ତି ।

ପେଚକବାହିନୀ ଗଜଲକ୍ଷ୍ମୀଙ୍କ ପରିବର୍ତ୍ତେ ସିଂହବାହିନୀ ଗଜଲକ୍ଷ୍ମୀଙ୍କର ସନ୍ଧାନ କେତେକ ଅଞ୍ଚଳରୁ ମିଳିଲାଣି । ମଧ୍ୟପ୍ରଦେଶର ଖଜୁରାହୋ ନିକଟସ୍ଥ ବିଶ୍ୱନାଥ ମନ୍ଦିରର ଉତ୍ତର ପୂର୍ବ କୋଣର ନାତିଉଚ୍ଚ ପୀଠ ଉପରେ ଅର୍ଦ୍ଧପର୍ଯ୍ୟଙ୍କ ଆସନରେ ଏକ ସିଂହବାହିନୀ ଗଜଲକ୍ଷ୍ମୀ ମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ । ମୂର୍ତ୍ତିଟି ଚତୁଃହସ୍ତ ବିଶିଷ୍ଟ । ନିମ୍ନ ହସ୍ତ ଦ୍ୱୟରେ ଅକ୍ଷମାଳା ଓ ଅମୃତଘଟ ଏବଂ ଉର୍ଦ୍ଧ୍ୱ ହସ୍ତ ଦ୍ୱୟରେ ନାଡ଼ଯୁକ୍ତ ପଦ୍ମପୁଷ୍ପ ଧାରଣ କରିଛନ୍ତି । ଦୁଇଗୋଟି ହସ୍ତୀ ଅଭିଷେକ ସମ୍ପନ୍ନ କରୁଛନ୍ତି । ପୀଠର ଠିକ ନିମ୍ନଭାଗରୁ ଏକ ସିଂହ ମୂର୍ତ୍ତି ଖୋଦିତ ହୋଇଛି ।

ଖଜୁରାହୋର ମ୍ୟୁଜିୟମସ୍ଥିତ ଅନ୍ୟ ଏକ ଚତୁଃହସ୍ତ ବିଶିଷ୍ଟ ଗଜଲକ୍ଷ୍ମୀ ମୂର୍ତ୍ତି ସମଭଙ୍ଗ ମୁଦ୍ରାରେ ଆସୀନା । ନିମ୍ନ ହସ୍ତ ଦୁଇଟି

ମଧ୍ୟରୁ ଗୋଟିଏ ବରଦ ମୁଦ୍ରା ଓ ଅନ୍ୟଟିରେ ଅମୃତ ପାତ୍ର ଥିବାର ପରିଲକ୍ଷିତ ହୁଏ । ପୂର୍ବୋକ୍ତ ମୂର୍ତ୍ତି ଗୁଡ଼ିକର ହସ୍ତୀପରି ଏଠାରେ ମଧ୍ୟ ହସ୍ତୀଦ୍ୱୟ ଅଭିଷେକ କରୁଅଛନ୍ତି । ପାର୍ଶ୍ୱରେ ଦୁଇଗୋଟି ଚାମର ଧାରଣୀ ଓ ସେମାନଙ୍କ ନିମ୍ନରେ ଦୁଇଗୋଟି ସିଂହ ପରସ୍ପରକୁ ମୁଖକରି ରହିଛନ୍ତି ।

ପୁରାତନ ମୁଦ୍ରା ଗୁଡ଼ିକ ମଧ୍ୟରୁ ଅଯୋଧ୍ୟା, କୌଶାମ୍ବୀ ଓ ଉଜ୍ଜୟିନୀଠାରୁ ପ୍ରାପ୍ତ କେତେକ ମୁଦ୍ରା ଇଣ୍ଡୋଗ୍ରୀକ ଓ ଗୁପ୍ତବଂଶୀୟ ରାଜାମାନଙ୍କ ଦ୍ୱାରା ପ୍ରଚଳିତ ବହୁ ମୁଦ୍ରାରେ ଗଜଲକ୍ଷ୍ମୀ ମୂର୍ତ୍ତିର ରୂପ ବ୍ୟବହୃତ ହୋଇଥିବାର ପ୍ରମାଣ ବିରଳ ନୁହେଁ ।

ପ୍ରାଚୀନ ମୁଦ୍ରାକୁ ଛାଡ଼ିଦେଲେ ତାମ୍ରଫଳକର ସିଲ୍ ଓ ଟେରାକୋଟା (କଣ୍ଟେଇ କାଣ୍ଡିପୂ)ରେ ଗଜଲକ୍ଷ୍ମୀଙ୍କ ମୂର୍ତ୍ତି ଥିବାର ପ୍ରମାଣ ମଧ୍ୟ ମିଳୁଅଛି । ଜେଜାଭୁକ୍ତିର ଚନ୍ଦ୍ରାତ୍ରେୟମାନେ ଓ ହୈହୟ ବଂଶର ବହୁ ପରାକ୍ରମଶାଳୀ ରାଜା ସେମାନଙ୍କ ଦ୍ୱାରା ଦାନ କରାଯାଇଥିବା ତାମ୍ର ଫଳକରେ ଲକ୍ଷ୍ମୀ ମୂର୍ତ୍ତିର ଖୋଦନ କରିଛନ୍ତି ।

ଅନ୍ୟ ପକ୍ଷରେ ପ୍ରାଚୀନ ମୁଦ୍ରା ଓ ତାମ୍ରଫଳକକୁ ଛାଡ଼ିଦେଲେ ଓଡ଼ିଶାର ବହୁ ମନ୍ଦିର ଗାତ୍ରରେ ଓ ଗୁମ୍ଫାରେ ଗଜଲକ୍ଷ୍ମୀ ମୂର୍ତ୍ତିର ସନ୍ଧାନ ମିଳେ । ସେ ମଧ୍ୟରେ ଭୁବନେଶ୍ୱରର ପର୍ଶୁରାମେଶ୍ୱର ମନ୍ଦିରର ଠିକ ଦ୍ୱାରବନ୍ଧ ଉପରେ, ରାଜରାଣୀ, ବ୍ରହ୍ମେଶ୍ୱର, କେଦାରେଶ୍ୱର, ଗୌରୀ ଆଦି ବହୁ ପ୍ରାଚୀନ ମନ୍ଦିର ଓ କୋଣାର୍କ ମନ୍ଦିର ଭିତରର ବଟବୃକ୍ଷ ତଳେ ନିପତିତ ଏକ ପ୍ରସ୍ତର ଖଣ୍ଡରେ ଗୋଟିଏ ଗଜଲକ୍ଷ୍ମୀ ମୂର୍ତ୍ତି ଖୋଦିତ ହୋଇଥିବାର ଦେଖାଯାଏ ।

ରାଜ୍ୟ ସଂଗ୍ରହାଳୟରେ ଭଦ୍ରକ ନିକଟସ୍ଥ ପାଳିଆରୁ ଆନୀତ ଏକ ଦ୍ୱାରବନ୍ଧର ମଧ୍ୟଦେଶରେ ଓ ଭୁବନେଶ୍ୱର ନିକଟସ୍ଥ ଭେରବାଡ଼ିଆ ଅଞ୍ଚଳରୁ ସଂଗୃହୀତ କୃଷ୍ଣ ମୂର୍ତ୍ତିର ପାର୍ଶ୍ୱ ଦେବତା ଭାବରେ ଗଜଲକ୍ଷ୍ମୀ ସ୍ଥାନ ପାଇଛନ୍ତି । ଭେରବାଡ଼ିଆରୁ ପ୍ରାପ୍ତ ଗଜଲକ୍ଷ୍ମୀ ମୂର୍ତ୍ତିଟି କୃଷ୍ଣ ମୂର୍ତ୍ତିର ଡାହାଣକୁ ଦଣ୍ଡାୟମାନ ଏବଂ ଚତୁଃହସ୍ତବିଶିଷ୍ଟା । ନିମ୍ନ ହସ୍ତ ଦ୍ୱୟରେ ପଦ୍ମକଳିକା ଏବଂ ଊର୍ଦ୍ଧ୍ୱହସ୍ତ ଦ୍ୱୟରେ ଦେହପୃଷ୍ଠ ଉପରେ ଦୁଇ ଗୋଟି ହସ୍ତୀ ଦଣ୍ଡାୟମାନ ହୋଇ ଶୁଣ୍ଢରେ ରତ୍ନ କଳସୀ ଧାରଣ ପୂର୍ବକ ଦେବୀଙ୍କୁ ସ୍ନାନ କରାଉଛନ୍ତି ।

ଖଣ୍ଡଗିରିର ଅନନ୍ତଗୁମ୍ଫାର ଏକ ତୋରଣରେ ଲକ୍ଷ୍ମୀ ମୂର୍ତ୍ତି ଖୋଦିତ ଥିବାର ଦେଖାଯାଏ । ଲକ୍ଷ୍ମୀ ମୂର୍ତ୍ତିର ବାହୁଦ୍ୱୟ ପ୍ରସ୍ଫୁଟିତ ପଦ୍ମପୁଷ୍ପର ନାଡରେ ବିଜଡ଼ିତ ହୋଇଛି ଏବଂ ମୂର୍ତ୍ତିର ଉଭୟ ପାର୍ଶ୍ୱରେ ପଦ୍ମପୁଷ୍ପ ଉପରେ ଦଣ୍ଡାୟମାନ ଦୁଇଟି ହସ୍ତୀ ସେମାନଙ୍କ ଶୁଣ୍ଢରେ ପବିତ୍ର ତୀର୍ଥଜଳପୂର୍ଣ୍ଣ କଳସୀ ଧରି ମୂର୍ତ୍ତିଙ୍କୁ ସ୍ନାନ କରାଉଛନ୍ତି । ଦୁଇଗୋଟି ପକ୍ଷୀ ପଦ୍ମକୋରକରୁ ପଦ୍ମବୀଜ ଖାଉଥିବାର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ହୋଇଛି ।

ଜୈନ ମାନଙ୍କ ମଧ୍ୟରେ ଗଜଲକ୍ଷ୍ମୀର ପ୍ରଚଳନ ଥିବା ବିଷୟ ଏଥିରୁ ସ୍ପଷ୍ଟ ସୂଚନା ମିଳୁଛି । କଥିତ ଅଛି, ଏହି ଚିତ୍ରର ପରିକଳ୍ପନା ମହାବୀରଙ୍କ ମାତା ତ୍ରିଶଳାଙ୍କର ଚତୁର୍ଦ୍ଦଶ ସ୍ୱପ୍ନ ମଧ୍ୟରୁ ଗୋଟିଏ । ଯେତେବେଳେ ମହାବୀର ଦେବାନନ୍ଦଙ୍କ ଗର୍ଭରୁ ତ୍ରିଶଳାଙ୍କ ଗର୍ଭକୁ ସ୍ଥାନାନ୍ତରିତ ହୋଇଥିଲେ, ସେହି ସମୟରେ ସେ ଏ ସ୍ୱପ୍ନ ଦେଖି ଥିଲେ । ଗଜଲକ୍ଷ୍ମୀ ମୂର୍ତ୍ତିଟି ଜୈନ, ବୌଦ୍ଧ ମାନଙ୍କର ଏକ ଶୁଭ ସୂଚକ ମୂର୍ତ୍ତି ବୋଲି ଉକ୍ତ ଧର୍ମର ପ୍ରାମାଣିକ ଗ୍ରନ୍ଥ ଗୁଡ଼ିକରେ ସୂଚିତ ହେବା ସଙ୍ଗେ ସଙ୍ଗେ ବ୍ରାହ୍ମଣ୍ୟ ଧର୍ମରେ ଲକ୍ଷ୍ମୀଙ୍କର ମାହାତ୍ମ୍ୟ ବିଶେଷ ଭାବରେ ପରିକଳ୍ପନା କରାଯାଇଛି । ହିନ୍ଦୁ ମାନଙ୍କ ମତରେ ସଂସାରର ପାଳନ ନିମିତ୍ତ ଜଗନ୍ମାତା ଲକ୍ଷ୍ମୀ ନାନା ରୂପରେ ଆବିର୍ଭୂତା ହୋଇ ସ୍ୱର୍ଗରେ ସ୍ୱର୍ଗ ଲକ୍ଷ୍ମୀ, ପାତାଳରେ ପାତାଳ ଲକ୍ଷ୍ମୀ ମର୍ତ୍ତ୍ୟରେ ମର୍ତ୍ତ୍ୟଲକ୍ଷ୍ମୀ, ରାଜଘରେ ରାଜଲକ୍ଷ୍ମୀ ତଥା ସର୍ବଘରେ ଗୃହଲକ୍ଷ୍ମୀ ବୋଲାଇ ସମସ୍ତଙ୍କୁ ପାଳନ କରନ୍ତି । ସମସ୍ତ ଦେବ-ଦେବୀଙ୍କ ସହିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ସମ୍ପର୍କରେ ଯେଉଁ ପ୍ରଥା ଓଡ଼ିଶାରେ ପ୍ରଚଳିତ, ସେ ସମ୍ବନ୍ଧରେ ମଧ୍ୟ ହିନ୍ଦୁ ପୁରାଣବିଦ୍-ମାନେ ସର୍ବଦା ସତର୍କତାର ସହିତ ଆଲୋଚନା କରିଛନ୍ତି ।

"ଯେହୁ କୃଷ୍ଣ ସେହୁ ନାରାୟଣ ଯେ ଅନନ୍ତ
ଯେହୁ ରାଧା ସେହୁ ଲକ୍ଷ୍ମୀ ଜାଣ ପ୍ରିୟବନ୍ତ ।
ସମ୍ପୂର୍ଣ୍ଣ ଷୋଳକଳା ଏ ବୈକୁଣ୍ଠ ମଣ୍ଡଳୀ
ମହାଲକ୍ଷ୍ମୀ ନାମ ତା'ର ସଂସାର ପାଳନୀ ।

ଗୋଲକ ଧାମରେ ଜଗନ୍ନାଥଙ୍କ ଅଙ୍ଗରୁ ଯେଉଁ ଦେବୀ ଜାତ ହୋଇଥିଲେ, ପରେ ସ୍ୱଇଚ୍ଛାରେ ସେ ଦୁଇଗୋଟି ଦେବୀ ଭାବରେ ପ୍ରକାଶିତ ହେଲେ । ଦୁଇଗୋଟି ଦେବୀଙ୍କୁ ପ୍ରାପ୍ତିଲାଭ ଆଶାରେ ସ୍ୱୟଂ ଜଗନ୍ନାଥ ମଧ୍ୟ କୃଷ୍ଣ ଓ ବିଷ୍ଣୁ ରୂପ ମଧ୍ୟ ଧାରଣ କଲେ । ବାମ ଭାଗରୁ ଉତ୍ପନ୍ନ ଦେବୀ ମହାଲକ୍ଷ୍ମୀ, ଶଙ୍ଖଚକ୍ର-ଗଦା-ପଦ୍ମଧାରୀ ବିଷ୍ଣୁଙ୍କୁ ବରଣ କଲେ ଓ ଦକ୍ଷିଣ ଭାଗରୁ ଜାତ ମୂର୍ତ୍ତିଟି ରାଧିକା ନାମ ହୋଇ ଦ୍ୱିଭୁଜ ବିଷ୍ଣୁ ବା କୃଷ୍ଣଙ୍କୁ ଆଲିଙ୍ଗନ କଲେ ।

"ରାଧିକାକୁ ଘେନି କୃଷ୍ଣ ଗୋଲକରହିଲେ
ଲକ୍ଷ୍ମୀ ଘେନି ନାରାୟଣ ବୈକୁଣ୍ଠକୁ ଗଲେ ।
ଦ୍ୱିଭୁଜ ବିଷ୍ଣୁ ହେଲେ ରାଧିକାଙ୍କ କାନ୍ତ
ଚତୁର୍ଭୁଜ ବିଷ୍ଣୁ ହେଲେ ମହାଲକ୍ଷ୍ମୀ ନାଥ ।"

ଏ ଦୃଷ୍ଟିରୁ ବିଚାର କଲେ ପୂର୍ବରୁ ଆଲୋଚିତ ନଟରାଜଙ୍କଠାରୁ ପ୍ରାପ୍ତ ଶ୍ରୀକୃଷ୍ଣ ବିଗ୍ରହ ସହିତ ଗଜଲକ୍ଷ୍ମୀ ବିଗ୍ରହଟି ତାତ୍ପର୍ଯ୍ୟପୂର୍ଣ୍ଣ ବୋଲି ମନେହୁଏ । ଓଡ଼ିଶାରେ ବହୁ ମନ୍ଦିର ଓ ମୂର୍ତ୍ତି ସହିତ ଅନେକ ଶିଳ୍ପ ଶାସ୍ତ୍ର ତଥା ମୂର୍ତ୍ତିତତ୍ତ୍ୱ ସମନ୍ୱିତ ବହୁ ପୁରାଣ ଅଦ୍ୟାବଧି ଲୋକ ଲୋଚନର ଅନ୍ତରାଳରେ ରହିଛି । ସେଗୁଡ଼ିକ ସଂଗ୍ରହ, ଉପଯୁକ୍ତ ସଂରକ୍ଷଣ ତଥା ତତ୍‌ସମ୍ବନ୍ଧରେ ଉପଯୁକ୍ତ ଗବେଷଣା କରାହେଲେ ବହୁ ନୂତନ ତଥ୍ୟ ମିଳିବ, ଏଥିରେ ସନ୍ଦେହ ନାହିଁ ।

— * —



ଢେଙ୍କାନାଳ ସିଦ୍ଧ ବଳରାମ ମନ୍ଦିର ପ୍ରାଙ୍ଗଣରେ ନବନିର୍ମିତ ମନ୍ଦିରରେ
ବିଜେ ଜଗତମାତା ଶ୍ରୀ ଶ୍ରୀ ମହାଲକ୍ଷ୍ମୀ
" ନମସ୍ତେଽସ୍ତୁ ମହାମାୟେ ଶ୍ରୀ ପୀଠେ ସୁର ପୂଜିତେ
ଶଙ୍ଖ ଚକ୍ର ଗଦା ହସ୍ତେ ମହାଲକ୍ଷ୍ମୀ ନମୋଽସ୍ତୁତେ ।"



ଢେଙ୍କାନାଳ ସିଦ୍ଧ ବଳରାମ ମନ୍ଦିର ପ୍ରାଙ୍ଗଣରେ
ନବନିର୍ମିତ ଲକ୍ଷ୍ମୀ ମନ୍ଦିର

# ଲକ୍ଷ୍ମୀପୂଜା

## କବିଭୂଷଣ ନନ୍ଦକିଶୋର ପଟ୍ଟନାୟକ

ବିଶ୍ୱସ୍ରଷ୍ଟା ଭଗବାନ ସୃଷ୍ଟି କରିବାକୁ ଇଚ୍ଛାକରି ବ୍ରହ୍ମା ଓ ବିଷ୍ଣୁ ମହେଶ୍ୱରଙ୍କୁ ସ୍ୱୀୟ ତ୍ରିଗୁଣାତ୍ମିକା ପ୍ରକୃତିରୁ ଜାତକଲେ ।

"ସ ଐକ୍ଷତ୍, ସ ଅକାମୟତ୍- ଏକୋଽହଂ ବହୁସ୍ୟାଂ ।"

ସେ ଏକ ଥିଲେ-ବହୁ ହେବାକୁ ଇଚ୍ଛାକଲେ । ତାହାଙ୍କ ଇଚ୍ଛା କଲେ ତା ସେ ଜାଣନ୍ତି । ଭଗବଦ୍ ଗୀତାରେ କୁହାଯାଇଛି— 'ମୟାଧ୍ୟକ୍ଷେଣ ପ୍ରକୃତି ସୂୟତେ ସଚରାଚରଂ' । ମୋର ତ୍ରିଗୁଣାତ୍ମିକା ପ୍ରକୃତି ଚରାଚର ଜଗତ୍ ସୃଷ୍ଟି କରେ, ମୋର ଅଧିଷ୍ଠାନରେ କାରଣ ପ୍ରକୃତି ଜଡ଼ । ମୁଁ ତା ଠାରେ ଦୃଷ୍ଟି ନଦେଲେ ସେ ସୃଷ୍ଟି କରି ପାରନ୍ତା ନାହିଁ । ମୋର ଲୀଳା ପାଇଁହିଁ ଏହି ସୃଷ୍ଟିର ବିକାଶ ।

"ମମ ଯୋନି ମହତ୍ ବ୍ରହ୍ମ, ତସ୍ମିନ୍ ଗର୍ଭଂ ଦଧାମ୍ୟହଂ
ସମ୍ଭବଃ ସର୍ବଭୂତାନାଂ ତତୋଭବତି ଭାରତ ।" (ଗୀତା)

ମହତ ବ୍ରହ୍ମ (ପ୍ରକୃତି) ମୋର ଯୋନି ସ୍ୱରୂପ, ମୁଁ ତହିଁରେ ଗର୍ଭାଧାନ କରେ— ମୁଁ ମାତା, ମୁଁ ପିତା ହୁଏ । ଏହି ରୂପେ ସୃଷ୍ଟି ଉତ୍ପନ୍ନ ହୁଏ ।

ତ୍ରିଗୁଣାତ୍ମିକା ପ୍ରକୃତି ସତ୍ତ୍ୱ ରଜ ତମ —ରୂପା । ରଜ ଗୁଣର ପ୍ରତୀକ ବ୍ରହ୍ମା — ସୃଷ୍ଟି କରନ୍ତି । ସତ୍ତ୍ୱ ଗୁଣ - ବିଷ୍ଣୁ ପାଳନ କରନ୍ତି ଏବଂ ତମ ଗୁଣର ପ୍ରତୀକ ଶିବ - ଏହାର ଉପସଂହାର କରନ୍ତି ।

ବିଶ୍ୱସ୍ରଷ୍ଟାଙ୍କର ଶକ୍ତି ସ୍ୱରୂପିଣୀ ଯୋଗମାୟାଙ୍କର ଅଂଶରେ ଉଲ୍ଲିଖିତ ତିନି ଦେବତା ମାନଙ୍କର ଶକ୍ତି ସ୍ୱରୂପା ହେଲେ— ବିଷ୍ଣୁଙ୍କର ଲକ୍ଷ୍ମୀ ଓ ସରସ୍ୱତୀ, ବ୍ରହ୍ମାଙ୍କର ସାବିତ୍ରୀ ଏବଂ ଶିବଙ୍କର ପାର୍ବତୀ ।

ବ୍ରହ୍ମା ଚରାଚର ପ୍ରାଣୀ ସୃଷ୍ଟି କଲେ — ପ୍ରକୃତିରୁ କ୍ଷିତି, ଅପ୍, ତେଜ, ବାୟୁ, ଆକାଶ ପ୍ରଭୃତି ଜାତ ହେଲେ । ଏହି ରୂପେ ବ୍ରହ୍ମା ସୃଜନ କରିବାରେ ଲାଗିଲେ । ଔଷଧି ଖାଦ୍ୟ ବସ୍ତୁ ଜଳଚର ସ୍ଥଳଚର ପ୍ରାଣୀ ସୃଷ୍ଟି କଲେ । ଏସବୁ ସୃଷ୍ଟ ବସ୍ତୁକୁ ପାଳନ କରିବାର ଭାର ରହିଲା ବିଷ୍ଣୁଙ୍କ ଠାରେ । ସେ ସମସ୍ତଙ୍କ ପାଇଁ ଖାଦ୍ୟ, ବାସସ୍ଥାନ, ଧର୍ମ କର୍ମ ଇତ୍ୟାଦିର ବ୍ୟବସ୍ଥା କଲେ । ଏ ଦାୟିତ୍ୱ ତୁଲାଇବା ପାଇଁ ଲକ୍ଷ୍ମୀ ଓ ସରସ୍ୱତୀ ହେଲେ ତାଙ୍କର ସହାୟକାରିଣୀ । ମହାଲକ୍ଷ୍ମୀ ଧନର ଅଧିସ୍ୱାମୀ ଓ ସରସ୍ୱତୀ ବିଦ୍ୟାର ଅଧିସ୍ୱାମୀ । ଉଭୟେ ପରସ୍ପର ସପତ୍ନୀ ହେଲେ ମଧ୍ୟ ଉଭୟଙ୍କର ସହଯୋଗରେ ବିଷ୍ଣୁ ପାଳନ କରିବାକୁ କ୍ଷମ ହେଲେ । ବିଦ୍ୟା ନଥିଲେ ଧନାର୍ଜନ ହୋଇନପାରେ — ଧନ ନଥିଲେ ବିଦ୍ୟା ସୃଷ୍ଟିର ସଂରକ୍ଷଣ କରି-ନପାରନ୍ତି । ଉଭୟେ ବ୍ରହ୍ମାଙ୍କୁ ନିଜ ନିଜର ରହିବା ସ୍ଥାନ ନିର୍ଦ୍ଦେଶ କରିବାକୁ ଅନୁରୋଧ କଲେ । ବ୍ରହ୍ମା ପଚାରିଲେ ଲକ୍ଷ୍ମୀଙ୍କୁ ତୁମେ କେଉଁଠି ରହିବ ? ଲକ୍ଷ୍ମୀ କହିଲେ— ଯେ ମୋତେ ସେବା କରିବ ମୁଁ ତା ପାଖରେ ରହିବି । ସରସ୍ୱତୀ ଅନୁରୂପ ଅନୁରୋଧ କଲେ । ବ୍ରହ୍ମା ଉଭୟଙ୍କୁ ଉଦ୍ଦିଷ୍ଟ ବର ପ୍ରଦାନ କଲେ । ବିଷ୍ଣୁ ଏହି ବରକୁ ଅନୁ-ମୋଦନ କରି ଉଭୟଙ୍କୁ ଚରାଚର, ବିଶ୍ୱ ପାଳନର ଦାୟିତ୍ୱ ଦେଇ କ୍ଷୀରାବ୍ଧିରେ ଉଦାର ଭାବରେ ଶୟନ କଲେ ।

ହିମାଳୟେ; ଚରଣେଭେ
ହରିଶେଖର ମହୋଦଧୌ ।

ଲକ୍ଷ୍ମୀଙ୍କୁ ଯେଉଁମାନେ ସେବା କଲେ ସେମାନେ ହେଲେ ଧନର ମାଲିକ । ଧନାଢ୍ୟ । ସେବା ଅର୍ଥରେ ଧନର ଆଗମନ ପାଇଁ ପନ୍ଥା ନିରୂପଣ କରିବା, ତାର ସଂରକ୍ଷଣ ପାଇଁ ଚେଷ୍ଟା କରିବା ଏବଂ ବ୍ୟୟ ପାଇଁ ମଧ୍ୟ ଉଚିତ ବ୍ୟବସ୍ଥା କରିବା । ଏହିପରି ବ୍ୟକ୍ତି ମାନେହିଁ

ହେଲେ ଲକ୍ଷ୍ମୀଙ୍କର ସେବକ ଓ ପୂଜକ । ଯେ ଅଧିକା ଧନ ସଞ୍ଚୟ କରନ୍ତି ସେ ହିଁ ଲକ୍ଷ୍ମୀଙ୍କର ବରପୁତ୍ର ।

ପୁରାଣ ମାନଙ୍କରେ ବର୍ଣ୍ଣିତ ହୋଇଅଛି ଯେ ଦେବତା ଓ ଅସୁର ମାନେ ମିଳିତ ହୋଇ ସମୁଦ୍ର ମନ୍ଥନ କରିଥିଲେ । ସମୁଦ୍ର ସମସ୍ତ ଧନର ଆକର । ତାହାକୁ ମନ୍ଥନ କରିବାରେ ତହିଁରୁ ବିବିଧ ପଦାର୍ଥ ଜାତ ହେଲେ । କୌଶଳ କ୍ରମେ ଭଗବାନ୍ଙ୍କ ମାଧ୍ୟମରେ ଦେବତାମାନେ ପ୍ରାୟ ସମସ୍ତ ବହୁମୂଲ୍ୟ ଧନରତ୍ନ ଗଜ ଅଶ୍ୱ ପ୍ରଭୃତି ଆପଣାର କରିନେଲେ ? ସେହି ସମୁଦ୍ର ମନ୍ଥନ ଫଳରେ ମହାଲକ୍ଷ୍ମୀଙ୍କର ଆବିର୍ଭାବ । ସମୁଦ୍ରର ଅଧିଷ୍ଠାତ୍ରୀ ଦେବତା ବରୁଣ ମହାଲକ୍ଷ୍ମୀଙ୍କୁ ବିଷ୍ଣୁଙ୍କର କରରେ ସମର୍ପଣ କଲେ । ସେ ହେଲେ— ବିଷ୍ଣୁପ୍ରାଣେଶ୍ୱରୀ-ତ୍ରିଲୋକ-ଜନନୀ, ଧନର ଅଧିଷ୍ଠାତ୍ରୀ ଦେବୀ । ଚରାଚରର ସକଳ ପ୍ରାଣୀଙ୍କୁ ସେମାନଙ୍କ କର୍ମ ଅନୁସାରେ ଧନ ଯୋଗାଇବା ହେଲା ତାଙ୍କର କାର୍ଯ୍ୟ । ଯେ ଯେଉଁ ପରିମାଣରେ ତାଙ୍କୁ ସେବା କରନ୍ତି, ତାଙ୍କୁ ତଦନୁରୂପ ଧନ ମିଳିଥାଏ । ଏହା ତାଙ୍କର ପକ୍ଷପାତିତା ନୁହେଁ । ଭଗବାନ କହିଛନ୍ତି—

'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ ।'

ମହାଲକ୍ଷ୍ମୀଙ୍କ ପକ୍ଷରେ ମଧ୍ୟ ଏହିକଥା— ଏହି ଘୋଷଣା ଯେ ଧନକୁ ପାଇବା ନିମନ୍ତେ ଆଗ୍ରହୀ, ସେ ଚଞ୍ଚଳ ହୋଇ କଥିତ ହୋଇଥାଏ ।

ସରସ୍ୱତୀଙ୍କର ଉପାସକ ମାନେ ସାଧାରଣତଃ ଦରିଦ୍ର, ଧନହୀନ । କାରଣ ସେମାନେ ଲକ୍ଷ୍ମୀଙ୍କୁ ଆଦର କରିବା ପରିବର୍ତ୍ତେ ବରଂ ଅନାଦର କରିଥାନ୍ତି । ତେଣୁ ଲକ୍ଷ୍ମୀ ତାଙ୍କ ପ୍ରତି ପ୍ରସନ୍ନ ହୁଅନ୍ତି ନାହିଁ । କବି ରାଧାନାଥ ରାୟ ଲେଖିଛନ୍ତି—

ଲକ୍ଷ୍ମୀଙ୍କ ସହିତ ହେଲାଣି କଳହ,<br>ବାଣୀଙ୍କର ମୋହର ହେଲା ସଦା ।

ବର୍ତ୍ତମାନ ପଣ୍ଡିତ ମାନେ ଲକ୍ଷ୍ମୀଙ୍କର ଅବମାନନା ସୂଚକ ବାକ୍ୟ ମାନ ପ୍ରୟୋଗ କରନ୍ତି— ଯଥା ଅର୍ଥ ହିଁ ଅନର୍ଥ—ଧନ ପାଇଁର

ଧୂଳିପରି । "ଲକ୍ଷ୍ମୀ ତୋୟ ତରଙ୍ଗ ଭଙ୍ଗ ସଦୃଶୀ"। ଧନ ପାଣିଫୋଟକା ପରି । ସାଧୁସନ୍ଥ ମାନେ ଧନକୁ ତୁଚ୍ଛ ମନେ କରନ୍ତି — କାଞ୍ଚନ ଓ ମୃତ୍ତିକା — ସମାନ ବୋଲି କହନ୍ତି । ସେମାନଙ୍କ ନିକଟରେ ଲକ୍ଷ୍ମୀ ରହିବେ କାହିଁକି ?

ଭଗବତ୍ ଭକ୍ତ ମାନେ ଧନକୁ ଆଦର କରନ୍ତି ନାହିଁ । ଭଗବାନ କହିଛନ୍ତି—

"ମୁହିଁ ସମ୍ପଦ ଦେଲେ ତାରେ
ପତନେ ଦୂରେ ପରି ହରେ !"

ସନାତନ ଧର୍ମରେ ଧର୍ମାଧିକାରୀ ବ୍ରାହ୍ମଣ ମାନେ ସେମାନଙ୍କ ଘରେ ଲକ୍ଷ୍ମୀ ନାରାୟଣ ଅଥବା ଲକ୍ଷ୍ମୀ ନୃସିଂହଙ୍କର ପ୍ରତିମା ରଖି ପୂଜା ଅର୍ଚ୍ଚନାଦି କରନ୍ତି । ଶ୍ରୀନୃସିଂହ ଶ୍ରୀମନ୍ ନାରାୟଣ ବା ବିଷ୍ଣୁଙ୍କର ଏକ ଅବତାର । ରାକ୍ଷସ ହିରଣ୍ୟକଶିପୁଙ୍କର ପୁତ୍ର ଭକ୍ତ ପ୍ରହ୍ଲାଦଙ୍କ ରକ୍ଷା ପାଇଁ ଭଗବାନ ସ୍ତମ୍ଭ ମଧ୍ୟରୁ ଜାତହୋଇ ହିରଣ୍ୟକଶିପୁକୁ ସଂହାର କରିଥିଲେ । ଜୟଦେବଙ୍କ ଦଶାବତାର ସ୍ତୋତ୍ରରେ ଅଛି—

ତବକର କମଳବରେ ନଖ ମଦ୍ଭୁତଂ ଶୃଙ୍ଗ
ଦଳିତ ହିରଣ୍ୟ କଶିପୁତନୁ ଭୃଙ୍ଗ ।
କେଶବ ଧୃତ ନରହରି ରୂପ ଜୟ ଜଗଦୀଶ ହରେ ।'

ଅସୁର ବିନାଶ ପରେ ନୃସିଂହ ଭଗବାନଙ୍କର କୋପରେ ତ୍ରିଭୁବନ ପ୍ରକମ୍ପିତ ହେଲା । ଦେବତା ମାନେ ମହାଲକ୍ଷ୍ମୀଙ୍କୁ ବରଣ କରି ତାଙ୍କ ନିକଟକୁ ଆଣିଲେ ମଧ୍ୟ କୋପ ଶାନ୍ତ ହେଲନାହିଁ — ଶାନ୍ତ ହେଲେ ଭଗବାନ ପ୍ରହ୍ଲାଦଙ୍କ ସ୍ତୋତ୍ରରେ — ଭକ୍ତର ଦୈନ୍ୟ ଦେଖି ପ୍ରଭୁ ଶାନ୍ତ ହେଲେ । ଏଥିରୁ ଜଣାଯାଏ ଭଗବାନ ଲକ୍ଷ୍ମୀଙ୍କ ତୁଳନାରେ ଭକ୍ତକୁ ଅଧିକ ପ୍ରିୟ ମନେ କରନ୍ତି । ଭଗବାନଙ୍କର ଅନ୍ୟ କୌଣସି ଅବତାରରେ ମହାଲକ୍ଷ୍ମୀଙ୍କର ସାନ୍ନିଧ୍ୟ ନାହିଁ । ଅବଶ୍ୟ ସୀତା ଦେବୀ ଓ ରୁକ୍ମିଣୀ ମହାଲକ୍ଷ୍ମୀଙ୍କର ଅଂଶ ଭୂତା ବୋଲି କଥିତ ହୋଇଅଛନ୍ତି । ଲକ୍ଷ୍ମୀ ପୁରାଣରେ ବଳରାମ ପିତାମ୍ବର ଦାଶଙ୍କ ଲିଖିତ । ଏହା ୨ଟୋଟି

ରତ୍ନାକର ବା ବଣ୍ଣଗଡରେ ଲଙ୍ଗିତ । ବପ୍ର ପିତାମ୍ବର ଦାଶ ନୃସିଂହ ଓ ତାଙ୍କ ଅନୁଜ ଶେଷଦେବଙ୍କର ମର୍ତ୍ତ୍ୟାବତାର ବର୍ଣ୍ଣନା କରିଅଛନ୍ତି । ସେମାନେ କୃଷ୍ଣବଲ୍ଲଭ ନାମକ ଜନୈକ ବ୍ରାହ୍ମଣଙ୍କ ପୁତ୍ର ରୂପରେ ଆବିର୍ଭୂତ ହୋଇ ନର ଲୀଳା କରିଥିଲେ ଓ ମୁର ଓ ଦାରୁଣ ନାମକ ଦୁଇ ଭାଇଙ୍କୁ ବିନାଶ କରିଥିଲେ । ସେତେବେଳେ ମହାଲକ୍ଷ୍ମୀ ମଧ୍ୟ ନର ଲୀଳାନୁଯାୟୀ ପ୍ରକଟ ହୋଇଥିଲେ ଏବଂ ଏହି ମହାଲକ୍ଷ୍ମୀଙ୍କୁ ଶ୍ରୀ ନୃସିଂହ ଧର୍ମପତ୍ନୀ ରୂପେ ଗ୍ରହଣ କରିଥିଲେ । ଏହି ଅବତାରର ମୌଳିକତା ସମ୍ବନ୍ଧରେ ସନ୍ଦେହର ଅବକାଶ ଥିଲେ ମଧ୍ୟ ଭଗବାନଙ୍କର ମୁରାରି ନାମରୁ ତାହାର ସଙ୍କେତ ମିଳିଥାଏ ।

ମହାଲକ୍ଷ୍ମୀ କେଉଁଠାରେ, କେଉଁ ସମୟରେ ଓ କିପରି ଭାବରେ ପୂଜିତା ତାଙ୍କର ରୂପ ଗୁଣ କର୍ମ କ'ଣ ଏ ବିଷୟରେ ପୁରାଣ ସାହିତ୍ୟରେ ବିଶେଷ ବର୍ଣ୍ଣନା ଦେଖାଯାଏ ।

(କ) ସାଧାରଣତଃ ସନାତନ ଧର୍ମରେ ମହାଲକ୍ଷ୍ମୀ ପରମ ବୈଷ୍ଣବୀ ଶଙ୍ଖ ଚକ୍ର ଗଦା ପଦ୍ମ ଧାରିଣୀ ଚତୁର୍ଭୁଜା ଭାବରେ ପୂଜିତା ହୁଅନ୍ତି । ସେ ପଦ୍ମାସନା — ବ୍ରାହ୍ମଣ କ୍ଷତ୍ରିୟ ଓ ବୈଶ୍ୟ ଏ ତ୍ରିବର୍ଣ୍ଣଙ୍କ ଘରେ ଘରେ ମହାଲକ୍ଷ୍ମୀ ପୂଜିତା ହୁଅନ୍ତି ।

(ଖ) ଏହି ତ୍ରିବର୍ଣ୍ଣ, ବିଷ୍ଣୁ ବା ନୃସିଂହଙ୍କ ବିଗ୍ରହ ସହିତ ମହାଲକ୍ଷ୍ମୀଙ୍କ ବିଗ୍ରହ ସ୍ଥାପନ କରି ପୂଜା କରନ୍ତି । ମହାଲକ୍ଷ୍ମୀଙ୍କ ପ୍ରତିମା ସ୍ୱର୍ଣ୍ଣ, ପିତଳ ଓ ତମ୍ବାରେ ନିର୍ମିତ ହୋଇଥାଏ । କୁତ୍ରାପି ଦାରୁ ପାଷାଣ ଓ ମୃତ୍ତିକା ଦ୍ୱାରା ମହାଲକ୍ଷ୍ମୀଙ୍କର ପ୍ରତିମା ନିର୍ମିତ ହୋଇନଥାନ୍ତି । ସ୍ଥାନେ ସ୍ଥାନେ ଚିତ୍ର ପ୍ରତିମା ମଧ୍ୟ ପୂଜିତା ହୁଅନ୍ତି ।

(ଗ) ଆର୍ଯ୍ୟ-ଧର୍ମରେ ଗୃହିଣୀ ମାନେ ମହାଲକ୍ଷ୍ମୀଙ୍କୁ ଧନ-ଜନ ଗୋପଲକ୍ଷ୍ମୀ (ସୌଭାଗ୍ୟ, ଯଶ, ସୁଖ) ଦାତ୍ରୀ ଭାବରେ ପୂଜା କରନ୍ତି । ଏହି ପୂଜା ମାର୍ଗଶୀର ମାସର ପ୍ରତି ଗୁରୁବାର ଦିନ ଅନୁଷ୍ଠିତ ହୋଇ ଶେଷ ଗୁରୁବାର ଦିନ ବିଶେଷ ସମାରୋହରେ ସମ୍ପନ୍ନ

କରାଯାଏ । ଏହା ହେଲା 'ମାଣବସା' ଗୁରୁବାର । ଏପରି ନାମକରଣର ତାତ୍ପର୍ଯ୍ୟ ମାର୍ଗଶୀର ମାସରେ କୃଷକ କ୍ଷେତରୁ ଅମଳ କରି ଘରକୁ ଧାନ ଆଣେ । ଏହି ଧାନ ପୂର୍ବ ପ୍ରଚଳିତ ରୀତି ଅନୁସାରେ ମାଣ ଓ ଗୌଣିରେ ମପାହୁଏ ବୋଲି ଘରେ ଘରେ ମାଣ ଓ ଗୌଣିକୁ ଚିହ୍ନିତ କରି ତାହାକୁ ଧାନରେ ପୂର୍ଣ୍ଣକରି ସୁସଜ୍ଜିତ ବେଦୀରେ ସ୍ଥାପନ କରନ୍ତି ଓ ଧୂପ ଦୀପ ନୈବେଦ୍ୟାଦି ଦ୍ୱାରା ପୂଜା କରନ୍ତି । ଏହା ଓଡ଼ିଶାର ବିଶିଷ୍ଟ ମାଣବସା ଗୁରୁବାର ମହାଲକ୍ଷ୍ମୀ ପୂଜା । କୃଷିଜୀବୀ ମାନଙ୍କର ଏ ପୂଜା ବିଶେଷ ଆଦରଣୀୟ ।

(ଘ) ଯେ କୌଣସି ମାସର ଶୁକ୍ଳପକ୍ଷ ଦଶମୀରେ ଯଦି ଗୁରୁବାର ପଡ଼େ ତେବେ ସେ ଦିନଟି ସୁଦଶାବ୍ରତ ରୂପରେ ଗୃହିଣୀ ମାନଙ୍କ ଦ୍ୱାରା ପାଳିତ ହୁଏ । ସେମାନେ ବ୍ରତ ପାଳନ କରି ସୂତାରେ ତିଆରି ୧୦ଟି ଗଣ୍ଠି ଯୁକ୍ତ ବ୍ରତ ଦେବୀଙ୍କୁ ଅର୍ପଣ କରି ସ୍ୱୀୟ ବାହୁରେ ବନ୍ଧନ କରନ୍ତି । ଦଶ ମଣ୍ଡା ପିଠାରେ — ମହାଲକ୍ଷ୍ମୀ ଆନନ୍ଦିତା ହୁଅନ୍ତି । ଏ ପ୍ରସାଦ ଅନ୍ୟ କାହାକୁ ଦିଆଯାଏ ନାହିଁ ।

(ଙ) ଏହି ସୁଦଶା ବ୍ରତ ଓ ମାଣବସା ଶୁଦ୍ରମାନେ ମଧ୍ୟ ପାଳନ କରନ୍ତି । ଆଚଣ୍ଡାଳ ବ୍ରାହ୍ମଣ ସମସ୍ତଙ୍କର ଏହି ପୂଜାରେ ଅଧିକାର ଅଛି । ଏହା ନିଜେ ମହାଲକ୍ଷ୍ମୀ ପ୍ରମାଣ କରି ଯାଇଛନ୍ତି । 'ଶ୍ରୀୟା' ଚଣ୍ଡାଳୁଣୀର ଉପାଖ୍ୟାନରେ ସମସ୍ତଙ୍କ ଘରେ ଏହି ପୂଜା । ଗୋବର ଓ ରଙ୍ଗମାଟିରେ ଘର ଦ୍ୱାର ସୁନ୍ଦର ଭାବରେ ଲିପାପୋଛା କରି ଚତୁଃପାର୍ଶ୍ୱରେ ଝୋଟି ଚିତ୍ର ସହିତ ବିବିଧ ଚିତ୍ର ଅଙ୍କନ କରି ଦ୍ୱାରରେ କଦଳୀ ଗଛ ଓ ପୂର୍ଣ୍ଣକୁମ୍ଭ ସ୍ଥାପନ ପୂର୍ବକ ଅତି ପ୍ରତ୍ୟୁଷରୁ ମହାଲକ୍ଷ୍ମୀଙ୍କୁ ଆବାହନ କରାଯାଏ । ମା ମହାଲକ୍ଷ୍ମୀ ଚେତାବନୀ ଶୁଣାଇଛନ୍ତି—

> ଆଜ ପରା ମାର୍ଗଶୀର ମାସ ଗୁରୁବାର
> ଲିପାପୋଛା କରନାହିଁ ଘରଦ୍ୱାର ତୋର । ଇତ୍ୟାଦି

ଘରେ ଘରେ ଲକ୍ଷ୍ମୀ ପୁରାଣ, ସୁଦଶାବ୍ରତ କଥା ପାଠ କରାଯାଏ । ଏହି କାର୍ଯ୍ୟ ଯେ ଯେତେ ପ୍ରତ୍ୟୁଷରୁ କରି ପାରନ୍ତି ସେତେ ଆନନ୍ଦ ମା ଠାକୁରାଣୀଙ୍କର । ସେ ବୁଲି ବୁଲି ପୂଜା ଗ୍ରହଣ କରନ୍ତି ।

ଆଜ ସିମେଣ୍ଟ ଚୂନରେ ଘର ; ଗୋବର ଲିପା ଚୋସ୍ଥର ପବିତ୍ରତା ଲୋପ ହୋଇଗଲାଣି କହିଲେ ଚଳେ — ସୋଟି ଚିତ୍ର କ୍ରମେ ବିସ୍ମୃତ ଗର୍ଭକୁ ଚାଲିଗଲାଣି । ନୂତନ ମାପଯନ୍ତ୍ର ଦ୍ୱାରା ମାଣ ଗୌଣିର ବ୍ୟବହାର କ୍ରମେ ହ୍ରାସପ୍ରାପ୍ତ ହେଲାଣି । ନାରୀ ମାନଙ୍କର ଏହି କଳା କୁଶଳତା ଇତିହାସର ବିଷୟ ହୋଇଗଲାଣି ।

(ଚ) ଆଶ୍ୱିନ ପୂର୍ଣ୍ଣିମା ଦିନ କୁମାର ଉତ୍ସବ ଓ ମହାଲକ୍ଷ୍ମୀଙ୍କର ପୂଜା ବହୁ ଆଡ଼ମ୍ବରରେ ଅନୁଷ୍ଠିତ ହୋଇଥାଏ । ଦଶହରାର ଦୁର୍ଗାପୂଜା କିମ୍ବା ଆଶ୍ୱିନ ପୂର୍ଣ୍ଣିମାର ଲକ୍ଷ୍ମୀପୂଜାରେ ଏବେ ଯେଉଁ ମୃଣ୍ମୟୀ ମୂର୍ତ୍ତି ପୂଜା ଅନୁଷ୍ଠିତ ହେଉଅଛି, ଏହା ବଙ୍ଗୀୟ ମାନଙ୍କ-ଠାରୁ ଆସିଅଛି । ଏହା ଉତ୍କଳର ପରମ୍ପରା ନୁହେଁ । ପୂର୍ବେ ରଜା ମହାରଜା ମାନେ ସେମାନଙ୍କର ଅନ୍ତଃପୁରରେ ସୁବର୍ଣ୍ଣମୟୀ ଦୁର୍ଗାଦେବୀ ତଥା ମହାଲକ୍ଷ୍ମୀ ମୂର୍ତ୍ତି ପୂଜା କରୁଥିଲେ । ରଜା ମାନଙ୍କ ଅନୁକରଣ କରି କ୍ଷତ୍ରିୟମାନେ ଏବଂ ବ୍ରାହ୍ମଣ ମାନେ ଏବେ ମଧ୍ୟ ଶକ୍ତି ଅନୁସାରେ ସୁବର୍ଣ୍ଣ ପ୍ରତିମା ପୂଜା କରୁଥିଲେ । ଏବେ ବଙ୍ଗବାସୀ ମାନଙ୍କର ଅନୁ-କରଣରେ କାର୍ତ୍ତିକ ମାସରେ ଦୀପାବଳୀ ଉତ୍ସବରେ ଶ୍ୟାମା ପୂଜା ମୃଣ୍ମୟୀ ମୂର୍ତ୍ତି ଦ୍ୱାରା ଅନୁଷ୍ଠିତ ହେଲାଣି କେତେକ ସ୍ଥାନରେ ।

(ଛ) ମହାଲକ୍ଷ୍ମୀ ପୂଜାକୁ ଗଜଲକ୍ଷ୍ମୀ ପୂଜା ବୋଲି କୁହାଯାଏ କାହିଁକି ? ଲକ୍ଷ୍ମୀ ଠାକୁରାଣୀଙ୍କ ମୂର୍ତ୍ତିର ଉଭୟ ପାର୍ଶ୍ୱରେ ଦୁଇଟି ଗଜ ସ୍ଥାପନ କରି ସେମାନଙ୍କର କର (ଥୋଡ଼କୁ) ଗୋଟିଏ ଗୋଟିଏ କୁମ୍ଭ ଦ୍ୱାରା ମଣ୍ଡିତ କରାଯାଏ । ସେ ଦୁହେଁ ଲକ୍ଷ୍ମୀଦେବୀଙ୍କର ମୁକୁଟକୁ କରରେ ସ୍ପର୍ଶକରି ଦଣ୍ଡାୟମାନ ହୁଅନ୍ତି । ସ୍ଥଳଚର ପ୍ରାଣୀ ଜଗତରେ ଗଜ ବୃହତ୍ତମ । ଏହି ଗଜ ରଜାମାନେ ଅରଣ୍ୟରୁ ଧରିଆଣି ସ୍ୱୀୟ ରଜଭବନ ନିକଟରେ ରଖନ୍ତି ଓ ଦିଗ୍‌ବିଜୟ ସମୟରେ ଏହା ଉପରେ ଅମାରୀରେ ବସି ଗମନାଗମନ କରନ୍ତି । ଗଜର ମୂଲ୍ୟ ଅଧିକ । ଏହି ବିଶାଳକାୟ ପ୍ରାଣୀକୁ ଅନ୍ୟ କେହି ପୋଷି ପାରନ୍ତି ନାହିଁ । ଗଜ ମହାଲକ୍ଷ୍ମୀଙ୍କର ବାହାନ ରୂପେ ବ୍ୟବହୃତ ହୁଏ ।

(ଜ) ତନ୍ତ୍ରରେ ମହାଲକ୍ଷ୍ମୀ ଚତୁର୍ଭୁଜା । ଶଙ୍ଖଚକ୍ର ଗଦା ପଦ୍ମ ଧାରଣୀ ପଦ୍ମାସୀନା ରୂପେ ପୂଜିତା ହୁଅନ୍ତି । ସେ ଗରୁଡ଼ାରୁଢ଼ା, ମହାମାୟୀ ।

ନମସ୍ତେଽସ୍ତୁ ମହାମାୟେ ଶ୍ରୀପୀଠେ ସୁର ପୂଜିତେ
ଶଙ୍ଖ ଚକ୍ର ଗଦାହସ୍ତେ ମହାଲକ୍ଷ୍ମୀ ନମସ୍ତୁତେ
ନମସ୍ତେ ଗରୁଡ଼ାରୁଢ଼େ କୋଳାସୁର ଭୟଙ୍କରୀ
ସର୍ବପାପ ହରେ ଦେବୀ ମହାଲକ୍ଷ୍ମୀ ନମସ୍ତୁତେ । ଇତ୍ୟାଦି

× ×

ଆଜି କେହି କେହି ତାନ୍ତ୍ରିକ ମହାଲକ୍ଷ୍ମୀଙ୍କୁ ଅଷ୍ଟାଦଶ ଭୁଜା ରୂପେ ଅର୍ଚ୍ଚନା କରନ୍ତି ।

ଅକ୍ଷସ୍ରକ ପରଶୁ ଗଦେଷୁ କୁଳୀଶଂ ପଦ୍ମଂ ଧନୁଂ କୁଣ୍ଡିକାଂ ।

× ×

ସେବେ ସୈରଭ ମର୍ଦ୍ଦିନୀମିହ ମହାଲକ୍ଷ୍ମୀ ସରୋଜସ୍ଥିତାଂ ।

× ×

ଏହି ମହାଲକ୍ଷ୍ମୀ ବୈଷ୍ଣବୀ । ଆମ୍ଭମାନଙ୍କର ଗଜଲକ୍ଷ୍ମୀ ମଧ୍ୟ ପରମ ବୈଷ୍ଣବୀ । ଏହାଙ୍କ ନିକଟରେ କୌଣସି ପ୍ରକାର ବଳି ଅର୍ପିତ ହୁଏନାହିଁ । ସର୍ବଦା ନିଃ ସଙ୍ଗୃତ ଦ୍ରବ୍ୟମାନ ନୈବେଦ୍ୟ ଦିଆଯାଏ । ଯୋଗୀ ଶ୍ରୀ ଅରବିନ୍ଦ ଶ୍ରୀମାଙ୍କୁ ମହାଲକ୍ଷ୍ମୀ ମହାକାଳୀ, ମହାସରସ୍ୱତୀ ଓ ମହାଦୁର୍ଗାଙ୍କ ପ୍ରତୀକ ବୋଲି କହୁଥିଲେ । ସେ ମଧ୍ୟ ପରମ ବୈଷ୍ଣବୀ ।

× ×

ମହାଲକ୍ଷ୍ମୀ ପୂଜା ସାତ୍ତ୍ୱିକୀ ହେବା ବିଧେୟ । ଘରେ ଘରେ ଯେଉଁ ପୂଜା ଅନୁଷ୍ଠିତ ହୁଏ ସେ ସବୁ ପ୍ରାୟ ସାତ୍ତ୍ୱିକ । ମାତ୍ର ସହରରେ ଯେଉଁ ପୂଜା ସାମ୍ପ୍ରିକ ଭାବରେ ଓ ସମୂହ ଭାବରେ କରଯାଉଛି, ଏଥିରେ ସାତ୍ତ୍ୱିକ ଭାବ ଅପେକ୍ଷା ରାଜସିକ ଓ ତାମସିକ ଭାବର ଆଧିକ୍ୟ ପରିଲକ୍ଷିତ ହୋଇଥାଏ । ବିଭିନ୍ନ ଧରଣର ମେଢ ଫାଟକ, ମାଇକ ଯନ୍ତ୍ରର ଉପଯୋଗ, ବ୍ୟାଣ୍ଡ ବାଜା, ନାଟ ତାମସା, ମ୍ୟାଜିକ ଓ ବିଭିନ୍ନ ଧରଣର ଆଲୋକ ସଜ୍ଜା ପ୍ରଭୃତି ଏବଂ ଏହାର

ମଧ୍ୟରେ ପ୍ରତିଯୋଗିତା, ପରସ୍ପର ବିଦ୍ୱେଷ, ନିନ୍ଦା, କୁତ୍ସାରଚନା ଏବଂ ବେଳେ ବେଳେ ବ୍ୟକ୍ତିଗତ ବା ଦଳଗତ ସଂଘର୍ଷ ଏ ସବୁ ରାଜସିକ ଓ ତାମସିକ ଗୁଣର ପରିଚୟସୂଚକ । ଏ ସବୁ ବାଞ୍ଛନୀୟ ନୁହେଁ । ମାତ୍ର କେତେକ ଖଳ ପ୍ରକୃତିର ଲୋକ ପୂଜା ସହିତ ସଂପୃକ୍ତ ହୋଇ ଏପରି ଅନର୍ଥ ଘଟାଇଥାନ୍ତି । ସେମାନଙ୍କୁ ଆୟତ୍ତାଧୀନ କରିବା ପାଇଁ ଅଗତ୍ୟା ପୋଲିସ ତଥା ଜିଲ୍ଲାର କର୍ମକର୍ତ୍ତା ମାନଙ୍କର ହସ୍ତକ୍ଷେପ ଆବଶ୍ୟକ ହୋଇଥାଏ । ମା ଏପରି ପୂଜାକୁ ପସନ୍ଦ କରନ୍ତିନାହିଁ ।

ଲକ୍ଷ୍ମୀ ସ୍ୱଭାବତଃ ଚଞ୍ଚଳା । ସେ କୌଣସି ସ୍ଥାନରେ ଚିରକାଳ ସ୍ଥାୟୀ ଭାବରେ ରହନ୍ତିନାହିଁ । ତାଙ୍କ ସେବାରେ ତ୍ରୁଟି ହେଲେ ସେ ସ୍ଥାନ ପରିତ୍ୟାଗ କରି ଚାଲିଯାନ୍ତି — ସେଇଥି ପାଇଁ — ।

'ଆଜି ଯେ ରାଜେନ୍ଦ୍ରାସନେ, କାଲି ସେ ଫକୀର'

ଏପରି ହେବାର କାରଣ ଧନର ଅସଦ୍ ବ୍ୟବହାର । ଅତ୍ୟନ୍ତ କୃପଣତା ଯେପରି ଅବାଞ୍ଛନୀୟ, ଅସଂଯତ ବ୍ୟକ୍ତି ମଧ୍ୟ ସେହିପରି ନିନ୍ଦନୀୟ ।

ପୂର୍ବେ ରାଜା ମାନଙ୍କ ସଭାରେ ପଣ୍ଡିତ ମାନଙ୍କର ଯେପରି ଆଦର ଥିଲା — ସେହିପରି ଆଦର ଥିଲା ରାଜ୍ୟର ଧନପତି ବା ଧନାଢ୍ୟ ବ୍ୟକ୍ତି ମାନଙ୍କର । ଗାନ୍ଧିଜୀ ନିଜେ ନିତାନ୍ତ ନିଃସ୍ୱ ଭାବରେ ଚଳୁଥିଲେ ମଧ୍ୟ ବିରଳା ପ୍ରମୁଖ ଶେଠଜୀ ମାନଙ୍କର ସହାୟତା ଲୋଡୁଥିଲେ ଏବଂ ତାଙ୍କଠାରୁ ଆବଶ୍ୟକ ମତେ ଅର୍ଥ ସାହାଯ୍ୟ ନେଉଥିଲେ ।

ପ୍ରତ୍ୟେକ ଲକ୍ଷ୍ମୀ ମେଡରେ ପ୍ରତିଦିନ ପ୍ରସାଦ ବିତରଣ ରହିଲେ ପୂଜାର ଯଥାର୍ଥତା ପ୍ରମାଣିତ ହୁଅନ୍ତା ।

ଶ୍ରୀ ଲକ୍ଷ୍ମୀ ଧ୍ୟାନମ୍

ଓଁ ପାଶାକ୍ଷ ମାଳିକା ମ୍ଭୋଜ-ଶୃଣିଭର୍ଯ୍ୟାମ ସୌମ୍ୟୋଃସ୍ଥଂ
ପଦ୍ମାସନାସଂସ୍ଥାୟୁତେ ଶ୍ରିୟଂ ତୈଲୋକ୍ୟମାତରଂ
ଗୌରବର୍ଣ୍ଣାଂ ସୁରୂପାଥ ସର୍ବାଳଙ୍କାର ଭୂଷିତାମ୍
ରୌକ୍ମ ପଦ୍ମ ବ୍ୟଗ୍ରକାଗ୍ରାଂ ବରଦାଂ ଦକ୍ଷିଣେନତୁ ।

ଦକ୍ଷିଣ ଓ ବାମ କରସ୍ଥିତ ପାଶ, ରୁଦ୍ରାକ୍ଷମାଳା, ପଦ୍ମ ଓ ଅଙ୍କୁଶ ଦ୍ୱାରା ଶୋଭମାନା, ଚନ୍ଦ୍ରାସନା, ତ୍ରିଭୁବନ ମାତା ଗୌରବର୍ଣ୍ଣା ସୁରୂପା ସର୍ବାଳଙ୍କାର ଭୂଷିତା ସ୍ୱର୍ଣ୍ଣ ପଦ୍ମଧାରଣୀ ଓ ଅଭୟବର ପ୍ରଦାୟିନୀ ଶ୍ରୀ ଲକ୍ଷ୍ମୀ ଦେବୀଙ୍କୁ ଧ୍ୟାନ କର ।

### ପ୍ରଣାମ ମନ୍ତ୍ର

ଓଁ ବିଶ୍ୱରୂପସ୍ୟ ଭାର୍ଯ୍ୟାସି ପଦ୍ମେ ପଦ୍ମାଳୟେ ଶୁଭେ
ସର୍ବତଃ ପାହି ମାଂ ଦେବି ମହାଲକ୍ଷ୍ମୀ ନମୋଽସ୍ତୁତେ ।

ଋଗ୍‌ବେଦୀୟ ସୌଭାଗ୍ୟ ଲକ୍ଷ୍ମୀ ଉପନିଷଦ୍‌ରେ ଶ୍ରୀ ସୂକ୍ତର ପ୍ରାରମ୍ଭିକ ସୂକ୍ତ—

ଓଁ ହିରଣ୍ୟବର୍ଣ୍ଣାଂ ହରିଣୀଂ ସୁବର୍ଣ୍ଣ ରଜତସ୍ରଜାଂ
ଚନ୍ଦ୍ରାଂ ହିରଣ୍ମୟୀଂ ଲକ୍ଷ୍ମୀଂ ଜାତବେଦୋ ମଆବହ ।

ଅର୍ଥାତ୍ :—

ହେ ଜାତବେଦ (ଅଗ୍ନି !) ତୁମେ, ଯେଉଁ ଲକ୍ଷ୍ମୀ ସୁବର୍ଣ୍ଣ ବର୍ଣ୍ଣ ସଦୃଶୀ କାଂଚନ ଶ୍ୟାମଳବର୍ଣ୍ଣ ଯୁକ୍ତା ରୂପବତୀ, ମୃଗରୂପିଣୀ ବନ ଭ୍ରମଣ କାରିଣୀ — ସୁବର୍ଣ୍ଣ ଓ ରୌପ୍ୟ ପୁଷ୍ପମାଳା ଧାରିଣୀ, ଏବଂ ଚନ୍ଦ୍ର ସଦୃଶ ପ୍ରକାଶମାନ ଏବଂ ଚନ୍ଦ୍ର ସଦୃଶ ସମସ୍ତଙ୍କୁ ଆନନ୍ଦ ଦାୟିନୀ ଅଟନ୍ତି, ସେହି ମାଆ ଲକ୍ଷ୍ମୀଙ୍କୁ ମୋ ପାଇଁ ଆବାହନ କରନ୍ତୁ ।





ଶ୍ରୀ ଶ୍ରୀ ମଉଡ଼ମଣୀ ରାଜଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ମିନାବଜାର ଲକ୍ଷ୍ମୀ ପ୍ରତିମା—୧୯୮୭



ମିନାବଜାର ତୋରଣ-୧୯୮୬

# ମହାଲକ୍ଷ୍ମୀ ନମୋସ୍ତୁତେ

ଶ୍ରୀ ସୁରେନ୍ଦ୍ର ନାଥ ମିଶ୍ର
ସଂପାଦକ, ଭୁବନଶ୍ରୀ

ଭାରତୀୟ ସଂସ୍କୃତିରେ ନାନାଦି ଦେବଦେବୀଙ୍କ କଳ୍ପନା ଓ ପୂଜାପାର୍ବଣ ବିଶ୍ୱର ଅନ୍ୟାନ୍ୟ ଦେଶ-ଜାତିଠାରୁ ସଂପୂର୍ଣ୍ଣ ପୃଥକ୍ । ସନାତନ କାଳରୁ ପ୍ରଚଳିତ ପ୍ରଥା ଓ ପାରମ୍ପରିକ ରୀତିକୁ ପରବର୍ତ୍ତି କାଳରେ ଆମ ଧର୍ମରେ ପାଳନୀୟ ପୂଜାପଦ୍ଧତିର ଅଙ୍ଗ ରୂପେ ଧରିନିଆ ଯାଇଛି । ପରେପରେ ଯୁଗପୁରୁଷ ଏବଂ ପୁରାଣକାର ମାନଙ୍କ ଦ୍ୱାରା ରଚିତ ବିଭିନ୍ନ ସନାତନଧର୍ମଗ୍ରନ୍ଥରେ ସେଗୁଡ଼ିକର ସୁବିସ୍ତୃତ ବର୍ଣ୍ଣନା ଓ ତାର ମାହାତ୍ମ୍ୟ ବର୍ଣ୍ଣିତ ହେବା ଫଳରେ ହିନ୍ଦୁ ସମାଜରେ ତାହା କ୍ରମେ ଧର୍ମରେ ପରିଣତ ହୋଇ ଯାଇଛି । ତନ୍ମଧ୍ୟରୁ **'ଲକ୍ଷ୍ମୀପୂଜା'** ଅନ୍ୟତମ ।

'ଲକ୍ଷ୍ମୀ' ପରମବ୍ରହ୍ମ ପ୍ରଭୁ ନାରାୟଣଙ୍କର ପତ୍ନୀ

'ତ୍ରୈଲୋକ୍ୟପୂଜ୍ୟତେ ଦେବୀ କମଳେ ବିଷ୍ଣୁବଲ୍ଲଭେ'
ଯଥାତ୍ୱ ସୁସ୍ଥିରା କୃଷ୍ଣେ ତଥାଭବ ମୟିସ୍ଥିରା ।'

ଅନ୍ୟତ୍ର :—

ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତି ହରେଦେବୀ ନାରାୟଣୀ ନମସ୍ତୁତେ ।।

ଉପରୋକ୍ତ ଦୁଇଟି ଶ୍ଳୋକରୁ ଜ୍ଞାତ ହେଉଛି ଯେ, ବିଶ୍ୱସ୍ରଷ୍ଟା ପରମ ପୁରୁଷ ଜଗତ ପିତାଙ୍କ ପତ୍ନୀରୂପେ ଜଗତ ମାତା ଲକ୍ଷ୍ମୀ ଜଗତ ପୂଜ୍ୟା ଅଟନ୍ତି ।

ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀ ବେଳକୁ ଓଡ଼ିଶାରେ ଲକ୍ଷ୍ମୀପୂଜାର ପ୍ରଥା ପ୍ରଚଳିତ ହୋଇ ଆସୁଥିବାର କଥା ପ୍ରତ୍ନତତ୍ତ୍ୱ ବିଭାଗର ପ୍ରମାଣସିଦ୍ଧ ବ୍ୟାଖ୍ୟାରୁ ଏହାସ୍ପଷ୍ଟ ସୂଚିତ ହୁଏ, ଭୁବନେଶ୍ୱରସ୍ଥ ଖଣ୍ଡଗିରି ଗୁମ୍ଫା ପଶ୍ଚିମରେ ରାମେଶ୍ୱର ମନ୍ଦିରରେ ଖୋଦିତ ଲକ୍ଷ୍ମୀମୂର୍ତ୍ତି, ଶ୍ରୀକ୍ଷେତ୍ର ପୁରୀ ଜଗନ୍ନାଥ ମନ୍ଦିର ବେଢାସ୍ଥ ଲକ୍ଷ୍ମୀ ମନ୍ଦିର, ସୂର୍ଯ୍ୟକ୍ଷେତ୍ର କୋଣାର୍କସ୍ଥ ଖୋଦିତ ଶିଳାରେ ଲକ୍ଷ୍ମୀ ମୂର୍ତ୍ତିର କଳ୍ପନା ଆଦିରୁ ଏହା ସ୍ପଷ୍ଟ ଏବଂ ଏହା ପୁରାଣରୁ ପ୍ରମାଣସିଦ୍ଧ ଯେ ଉତ୍କଳଖଣ୍ଡରେ ଲକ୍ଷ୍ମୀପୂଜାର ଆଦର ଅାବାହମାନ କାଳରୁ ଥିଲା ।

ପୁରାଣ ବର୍ଣ୍ଣିତ ଆଖ୍ୟାନରୁ ଜଣାଯାଏ ଯେ ଭଗବାନଙ୍କ ଅବତାର ସହିତ ଜଗନ୍ମାତା ଲକ୍ଷ୍ମୀ ନାରୀ ରୂପରେ ମାନବଶରୀରରେ ଧରାରେ ଅବତାର ହୋଇ ପ୍ରଭୁଙ୍କ ସହିତ ଖେଳାଲୀଳା କରିଛନ୍ତି । ରାମ ଅବ-ତାରରେ ସୀତା, ଶ୍ରୀକୃଷ୍ଣଙ୍କ ସହିତ ରୁକ୍ମଣୀ, ବାମନ ଅବତାରରେ କମଳ ଉଦ୍‌ଭବା ଲକ୍ଷ୍ମୀ, ପରଶୁରାମଙ୍କ ସହିତ ଧରଣୀ । ଆଦିତ୍ୟଙ୍କ ସହ ପଦ୍ମା ରୂପୀ ଲକ୍ଷ୍ମୀ ଜନ୍ମ ଗ୍ରହଣ କରିଛନ୍ତି । ସ୍ୱର୍ଗଲକ୍ଷ୍ମୀ, ରାଜଲକ୍ଷ୍ମୀ, ଗୃହଲକ୍ଷ୍ମୀ ବିଜୟଲକ୍ଷ୍ମୀ, ରୂପଶ୍ରୀ 'ଏବଂ' 'ଲକ୍ଷ୍ମୀ,' ବିଦ୍ୟମାନ ଯେଉଁଭଳି ଭାବରେ ସମସ୍ତ ତତ୍ତ୍ୱର ମୂଳାଧାର ଭଗବାନ ବିଷ୍ଣୁ — ତାଦୃଶଲକ୍ଷ୍ମୀ ହୋଇଛନ୍ତି, ସମସ୍ତ ଜ୍ଞାନ, ଶକ୍ତିତେଜ, ସୌଭାଗ୍ୟ, ସମୃଦ୍ଧି ଗୁଣରେ ପରିପୂର୍ଣ୍ଣ ଅଟନ୍ତି ଏବଂ ସେ ମୂଳତତ୍ତ୍ୱ ବୋଲି ଗୃହିତ ।

ସନାତନ ଧର୍ମରେ ବେଦ, ଉପନିଷଦ, ମହାଭାରତ ବିଷ୍ଣୁପୁରାଣ ବ୍ରହ୍ମ ବୈବର୍ତ୍ତ ପୁରାଣ, ଗରୁଡ ପୁରାଣ, ପଦ୍ମପୁରାଣ, ଲକ୍ଷ୍ମୀ ପୁରାଣ, ଶ୍ରୀମଦ୍ ଭାଗବତ, ଆଦି ବହୁ ପୁରାଣ ଗ୍ରନ୍ଥମାନଙ୍କରେ ଲକ୍ଷ୍ମୀଙ୍କର ସୃଷ୍ଟି ଓ ସ୍ୱରୂପର ବର୍ଣ୍ଣନା ଦେଖିବାକୁ ମିଳେ । ନାନାମତ ଓ ନାନାଯୁକ୍ତି ସତ୍ତ୍ୱେ ମହାଲକ୍ଷ୍ମୀଙ୍କ ସୃଷ୍ଟିର ମୂଳତତ୍ତ୍ୱ ଏକବୋଲି ବ୍ୟାସ, ବଶିଷ୍ଠ ଋଷି ଆଦି କହି ଯାଇଛନ୍ତି । ଏହି ପରିପ୍ରେକ୍ଷୀରେ ପୁରାଣ ଆଧାରିତ ତତ୍ତ୍ୱ, ଯେ ସୃଷ୍ଟି ପୂର୍ବରୁ ଜଗତ କର୍ତ୍ତା ପରମବିଷ୍ଣୁ ବାମଅଙ୍ଗରୁ ଲକ୍ଷ୍ମୀ ଙ୍କୁ ଜାତକଲେ - ତାହା ପରମପିତାଙ୍କ ଇଚ୍ଛାରେ ଦୁଇଟି ରୂପରେ ବିଭକ୍ତ ହେଲେ; ପ୍ରଥମଟି ଚତୁର୍ଭୁଜା ଲକ୍ଷ୍ମୀ ଓ ଦ୍ୱିତୀୟଟି ଦ୍ୱିଭୁଜା ରାଧା । 'ଲକ୍ଷ୍ମୀ' 'ଶ୍ରୀକୃଷ୍ଣ'ଙ୍କ ବାମାଂଶରୁ ଓ ଦକ୍ଷିଣାଂଶରୁ ରାଧିକା ଙ୍କୁ

ଜନ୍ମ ବୋଲି ଆଉକେତେକ ପୁରାଣ ବ୍ୟାଖ୍ୟାକାରଙ୍କ ମତ । ଉଭୟଙ୍କୁ ପତ୍ନୀ ରୂପେ ଗ୍ରହଣ କରି ବୈକୁଣ୍ଠ ଧାମରେ ଲକ୍ଷ୍ମୀକାନ୍ତ ଏବଂ ଗୋଲକ ଧାମରେ ରାଧାକାନ୍ତ ରୂପେ ବର୍ଣ୍ଣିତ ହେଲେ । ଏହାଭିନ୍ନ ଅନ୍ୟ ଏକ ପୁରାଣ ଆଖ୍ୟାୟିକାରୁ ଜ୍ଞାତ ହୁଏ ଯେ, ବିଷ୍ଣୁଙ୍କର କଳଟସ୍ଥ ସ୍ୱର୍ଣ୍ଣପଦ୍ମରୁ ଲକ୍ଷ୍ମୀଙ୍କର ଜନ୍ମ । ପୁରାଣକାରମାନେ ଲେଖି ଯାଇଛନ୍ତି ଯେ, ଏକଦା ଶଙ୍କରଙ୍କ ଅଂଶୀଭୂତ ମହର୍ଷି ଦୁର୍ବାସାଙ୍କ ଅଭିଶାପ ଫଳରେ ଇନ୍ଦ୍ରଙ୍କ ସ୍ୱର୍ଗରାଜ୍ୟ ଲକ୍ଷ୍ମୀହୀନ ହେଲା । ତତ୍ପରେ ଦେବଗଣ ବିଷ୍ଣୁଙ୍କୁ ମିଳିତ ପ୍ରାର୍ଥନା କରି ତାଙ୍କ ଶରଣାପନ୍ନ ହେଲେ—ତତ୍ପରେ ପ୍ରଭୁ ଦେବତାଙ୍କ ଉପରେ ସନ୍ତୁଷ୍ଟ ହୋଇ ଜଗନ୍ମାତା ଲକ୍ଷ୍ମୀଙ୍କୁ କ୍ଷୀର ସାଗରରେ ଜନ୍ମ ହେବାକୁ ପ୍ରବର୍ତ୍ତାଇ ଥିଲେ । ପରବର୍ତ୍ତି ଅଧ୍ୟାୟରେ ଅମୃତ ଲାଭ ଆଶାରେ ଦେବାସୁରଙ୍କ ସମୁଦ୍ର ମନ୍ଥନ ଆରମ୍ଭ ହେଲା – ତନ୍ମଧ୍ୟରୁ ସିନ୍ଧୁ ତନୟା ମା ଲକ୍ଷ୍ମୀ ଏବଂ ତାଙ୍କ ଅନୁଜରୂପେ ଚନ୍ଦ୍ରଙ୍କର ଆବିର୍ଭାବ ହେଲା । ତତ୍ପରେ ବ୍ରହ୍ମାଙ୍କ ଦ୍ୱାରା ବିଷ୍ଣୁଙ୍କୁ ଲକ୍ଷ୍ମୀ ଦେବୀ ପ୍ରଦତ୍ତ ହେଲେ ଏହିଠାରେ ଦେବଗଣ ଲକ୍ଷ୍ମୀଙ୍କୁ ଦୁଃଖ ବିନାଶିନୀ, ପଙ୍କଜ ଲୋଚନା, ଶ୍ୱେତପଦ୍ମାବର୍ଣ୍ଣା, ସର୍ବ ସଂପଦ ଦାୟିନୀ, ଶୁଭ ବିଧାୟିନୀ, ଧନଅଧିଶ୍ୱରୀ ଶସ୍ୟ ପାଳନ କାରିଣୀ ବୁଦ୍ଧିଦା ସିଦ୍ଧିଦା, ଦେବମାତା, ଅଦ୍ୱୈତ ଶୁଦ୍ଧସତ୍ତ୍ୱ ସ୍ୱରୂପିଣୀ, ବରଦାତ୍ରୀ, ସର୍ବଲୋକର ଜନନୀ, ଧର୍ମ-ଅର୍ଥ-କାମମୋକ୍ଷର ହେତୁ ସମସ୍ତ ଜୀବର ପାଳନକର୍ତ୍ତ୍ରୀ, ସର୍ବଦାତ୍ରୀ, ଏବଂ ସର୍ବରୂପା ରୂପରେ ସ୍ତୁତି କରୁଥିଲେ । ପୁରାଣ ବର୍ଣ୍ଣିତ ସତୀ, ସାଧ୍ୱୀ ପତିବ୍ରତାନାରୀ ମାନେ ମହାଲକ୍ଷ୍ମୀଙ୍କୁ ସଶ୍ରଦ୍ଧାରେ ପ୍ରତିମୂର୍ତ୍ତିରୂପେ ଗୃହରେ ସ୍ଥାପନ କରି ମର୍ଯ୍ୟାଦାର ସହ ପୂଜା କରନ୍ତି ।

ରାମାୟଣ ଓ ମହାଭାରତରେ ଦେଖିବାକୁ ମିଳେ ଯେ ସୃଷ୍ଟି କର୍ତ୍ତା ବ୍ରହ୍ମାଙ୍କ ମୁଖରୁ ଗୋଟିଏ 'ଦେବୀ'ଙ୍କ ଉତ୍ପତ୍ତି ହେଲା । ତାଙ୍କର ଗୋଟିଏ ଅଂଶ କୃଷ୍ଣ ଓ ଅନ୍ୟଟି ଗୌରବର୍ଣ୍ଣ । ବ୍ରହ୍ମା ଏହାକୁ ପୁନର୍ବାର ଦୁଇଅଂଶରେ ବିଭକ୍ତ ହେବାକୁ ନିର୍ଦ୍ଦେଶ ଦେଲେ । ଗୌର ଅଂଶରୁ ଜନ୍ମ ନେଇଥିବା ଦେବୀ ମାନଙ୍କ ମଧ୍ୟରୁ ଲକ୍ଷ୍ମୀ ଅନ୍ୟତମ । ଏତାଦୃଶ ବର୍ଣ୍ଣନା ମତ୍ସ୍ୟ ପୁରାଣ ଓ ହରିବଂଶ ପୁରାଣ ମାନଙ୍କରେ ସାମାନ୍ୟ ଭିନ୍ନ ରୂପରେ ଦେଖିବାକୁ ମିଳେ । ସେଠାରେ ଧୃତି, ସରସ୍ୱତୀ, ଜଗଦ୍ଧାତ୍ରୀ

ଏହି ଉକ୍ତିମାନଙ୍କ ପରେ ଲକ୍ଷ୍ମୀ ବ୍ରହ୍ମାଙ୍କର ଗୋଟିଏ କନ୍ୟା ଏବଂ ଧାତା ଓ ବିଧାତା ସେମାନଙ୍କର ସୋଦର ରୂପରେ ଦର୍ଶିତ ।

ପଦ୍ମପୁରାଣ, ବିଷ୍ଣୁପୁରାଣ, ମାର୍କଣ୍ଡେୟ ତଥା ଗରୁଡ଼ ପୁରାଣରେ ଲକ୍ଷ୍ମୀଙ୍କର ଜନ୍ମଉପରେ ଅନ୍ୟ ଏକ ବର୍ଣ୍ଣନା ଦେଖିବାକୁ ମିଳେ । ବ୍ରହ୍ମା ଜଗତ ସୃଷ୍ଟି କାମନା କରି ପ୍ରଥମେ ନଅଜଣ 'ପ୍ରଜାପତି'ଙ୍କୁ ଜନ୍ମଦେଲେ । ସେମାନେ ହେଲେ—ଭୃଗୁ, ପୁଲସ୍ତ୍ୟ, କ୍ରତୁ, ଅଙ୍ଗୀରସ, ଦକ୍ଷ, ଅତ୍ରି, ମରୀଚି ଓ ବଶିଷ୍ଠ । ଏତଦ୍ ସହ ବ୍ରହ୍ମା ମନୁ, ସ୍ୱାୟମ୍ଭୁବଙ୍କୁ—ଶତରୂପାଙ୍କୁ ସ୍ତ୍ରୀ ରୂପେ ପ୍ରଦାନ କଲେ । ସେମାନଙ୍କ ଔରସରୁ ପ୍ରିୟବ୍ରତ ଓ ଉତ୍ତାନ-ପାଦ ନାମରେ ଦୁଇଟି ପୁତ୍ର ଏବଂ ଋଦ୍ଧି ଓ ପ୍ରସୂତି ନାମରେ ଦୁଇଗୋଟି କନ୍ୟା ଜାତକଲେ । ଦକ୍ଷ ପ୍ରସୂତିଙ୍କୁ ବିବାହ କଲେ ଏବଂ ସେମାନଙ୍କ ମିଳନରେ ଲକ୍ଷ୍ମୀ ପ୍ରଭୃତି ଚବିଶ ଗୋଟି କନ୍ୟା ଜାତ ହେଲେ ।

ଅନ୍ୟଏକ ପୁରାଣ ଆଖ୍ୟାୟିକାରେ ବର୍ଣ୍ଣିତ କଥା ମୁତାବକ ମହର୍ଷି ଭୃଗୁ ଖ୍ୟାତିଙ୍କୁ ବିବାହ କରିଥିଲେ ଏବଂ ତାଙ୍କର ଧାତା ଓ ବିଧାତା ନାମରେ ଦୁଇପୁତ୍ର ଓ ଲକ୍ଷ୍ମୀ କନ୍ୟାରୂପେ ଜାତ ହୋଇଥିଲେ ।

ବ୍ରହ୍ମ ବୈବର୍ତ୍ତ ପୁରାଣ ଓ ଦେବୀ ଭାଗବତରେ ଲେଖାଅଛି ଯେ ପରମାତ୍ମନ୍ କୃଷ୍ଣ ଯୋଗବଳରେ ଦୁଇଭାଗ ହୋଇ ନିଜେ ବିଭକ୍ତ ହୋଇଗଲେ—ବାମଭାଗରୁ ଦୁର୍ଗା, ରାଧା, ଲକ୍ଷ୍ମୀ, ସରସ୍ୱତୀ ଓ ସାବିତ୍ରୀଙ୍କ ଉତ୍ପତ୍ତି ହେଲା ।

ବ୍ରହ୍ମାଣ୍ଡ ପୁରାଣରେ ଲଳିତା ଉପାଖ୍ୟାନରେ ଲକ୍ଷ୍ମୀଙ୍କର ଜନ୍ମ-ବୃତ୍ତାନ୍ତରେ ଲେଖାଯାଇଛି ଯେ, ମୂଳ ପ୍ରକୃତି ମହାଲକ୍ଷ୍ମୀ ସୃଷ୍ଟି କରିବା ପାଇଁ ଇଚ୍ଛା କଲେ । ତାଙ୍କ ଇଚ୍ଛାରେ ତିନୋଟି ଡିମ୍ବର ଉତ୍ପତ୍ତି ହେଲା, ଗୋଟିଏ ଡିମ୍ବରୁ ଜନ୍ମନେଲେ ଅମ୍ବିକା ଓ ବିଷ୍ଣୁ, ଦ୍ୱିତୀୟ ଡିମ୍ବରୁ ଜନ୍ମନେଲେ ଶ୍ରୀ ଓ ବ୍ରହ୍ମା, ତୃତୀୟ ଡିମ୍ବରୁ ଜନ୍ମନେଲେ ସରସ୍ୱତୀ ଓ ଶିବ। ତତ୍ପରେ ମହାଲକ୍ଷ୍ମୀ ବ୍ରହ୍ମାଙ୍କୁ ସରସ୍ୱତୀ, ଶିବଙ୍କୁ ଅମ୍ବିକା ଓ ବିଷ୍ଣୁଙ୍କୁ ଶ୍ରୀ(ଲକ୍ଷ୍ମୀ)ଙ୍କୁ ବିବାହ ଦେଲେ ।

ପୁରାଣ ବର୍ଣ୍ଣିତ ମହାଲକ୍ଷ୍ମୀ ସତ୍ତ୍ୱ, ରଜ ଓ ତମଗୁଣର ଅଧିକାରିଣୀ—ତାଙ୍କର ତାମସିକ ରୂପ ହେଲା ମହାକାଳୀ, ସାତ୍ତ୍ୱିକ ରୂପ ହେଲା ମହାସରସ୍ୱତୀ ଏବଂ ରାଜସିକ ରୂପେ ହେଲେ ମହାଲକ୍ଷ୍ମୀ । ଏହି ତିନ ଦେବୀ ସୃଷ୍ଟି ପ୍ରକ୍ରିୟାରେ ପ୍ରବୃତ୍ତ ହେଲେ, ମହାଲକ୍ଷ୍ମୀ ବ୍ରହ୍ମା ଓ ଲକ୍ଷ୍ମୀଙ୍କୁ ସୃଷ୍ଟି କଲେ । ମହାକାଳୀ ରୁଦ୍ର ଓ ସରସ୍ୱତୀଙ୍କୁ ଏବଂ ମହାସରସ୍ୱତୀ ବିଷ୍ଣୁ ଓ ଉମାଙ୍କୁ ସୃଷ୍ଟି କଲେ । ଏହାପରେ ମହାଲକ୍ଷ୍ମୀ ବ୍ରହ୍ମାଙ୍କୁ ସରସ୍ୱତୀ, ଶିବଙ୍କୁ ଉମା, ବିଷ୍ଣୁଙ୍କୁ ଲକ୍ଷ୍ମୀ ପ୍ରଦାନ କରିଥିଲେ ।

ଲକ୍ଷ୍ମୀଙ୍କର ଜନ୍ମ ଯେଉଁଭଳି ରହସ୍ୟାବୃତ୍ତ ତାଦୃଶ ତାଙ୍କର ବିବାହ ଆଖ୍ୟାନ କୌତୁହଳମୟ, ପୁରାଣକାର ମାନଙ୍କମତରେ ବ୍ରହ୍ମାଙ୍କ ମାନସ ପୁତ୍ର ଭୃଗୁଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଲକ୍ଷ୍ମୀ ତାଙ୍କର କନ୍ୟା ରୂପେ ଜନ୍ମ ନେବାକୁ ବର ପ୍ରଦାନ କରିଥିଲେ । ଭୃଗୁଙ୍କ ପତ୍ନୀ ଦକ୍ଷ ରାଜକନ୍ୟା ଖ୍ୟାତିଙ୍କ ଗର୍ଭରୁ ତ୍ରିଲୋକ ସୁନ୍ଦରୀ ଭୁବନ ମୋହିନୀ ଲକ୍ଷ୍ମୀ ଜନ୍ମ ନେଲେ । ପରିଣତ ବୟସରେ ସେ କଠୋର ତପସ୍ୟାକରି ବିଷ୍ଣୁଙ୍କୁ ପତିରୂପେ ପ୍ରାପ୍ତ ହୋଇଥିଲେ ।

ପୁରାଣ ବର୍ଣ୍ଣିତ ଲକ୍ଷ୍ମୀ ଯେତେବେଳେ ଦକ୍ଷ ପ୍ରଜାପତିଙ୍କ କନ୍ୟା ରୂପେ ଜନ୍ମିଲେ ସେତେବେଳେ ସେ ଧର୍ମଙ୍କୁ ପତିରୂପେ ବରଣ କରିଥିଲେ । ତାଙ୍କର ଦର୍ପନାମରେ ଏକପୁତ୍ର ଜାତହେଲା । ଏଠାରେ ବିଷ୍ଣୁ ଲକ୍ଷ୍ମୀଙ୍କ ମିଳନର କୌଣସି ବର୍ଣ୍ଣନା ନାହିଁ ।

ପୁରାଣରେ ବର୍ଣ୍ଣନା ଅଛି ଯେ, ଅତ୍ରିଋଷିଙ୍କର ପୁତ୍ର ସୋମ ନିଜର ଆଧିପତ୍ୟ ବିସ୍ତାର ପାଇଁ ରାଜସୂୟ ଯଜ୍ଞ କଲେ । ହରି ନାରାୟଣ ତାଙ୍କୁ ଏ କାର୍ଯ୍ୟରେ ସାହାଯ୍ୟ କଲେ । ଉକ୍ତ ଯଜ୍ଞ କରିବା ଫଳରେ ତାଙ୍କର ତେଜ, ଶକ୍ତି, ସାମର୍ଥ୍ୟ ବୃଦ୍ଧି ପାଇଲା । ତାଙ୍କ ରୂପ ଗୁଣରେ ମୁଗ୍ଧ ହୋଇ ନଅଜଣ ଦେବୀ ସେମାନଙ୍କର ସ୍ୱାମୀଙ୍କୁ ପରିତ୍ୟାଗ କରି ସୋମଙ୍କୁ ଆଶ୍ରୟ କଲେ । ଯେଉଁ ନଅଜଣ ଦେବୀ ନିଜ ନିଜ ସ୍ୱାମୀଙ୍କୁ ପରିତ୍ୟାଗ କରି ସୋମଙ୍କୁ ଆଶ୍ରୟ କରିଥିଲେ ସେମାନଙ୍କ ମଧ୍ୟରେ ଲକ୍ଷ୍ମୀଦେବୀ ଅନ୍ୟତମା । ଏହିଭଳି ଭାବରେ ବିଭିନ୍ନ ପୁରାଣକାର

ମାନେ ଲକ୍ଷ୍ମୀଙ୍କ ଜନ୍ମ ଓ ବିବାହ ଉପରେ ନାନାମତ ମାନ ପ୍ରକାଶ କରିଛନ୍ତି । ସେ ଯାହା ହେଉନା କାହିଁକ ଓଡ଼ିଶାର ଶ୍ରୀକ୍ଷେତ୍ର ପୁରୀ ଜଗନ୍ନାଥ ମନ୍ଦିରରେ ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ ରୂପେ ପୂଜିତା, ଏ କଥାର ଦ୍ୱିମତ ନାହିଁ ।

× × ×

ସ୍ୱର୍ଗର ରାଜା ଇନ୍ଦ୍ର ଏକଦା ଜଗନମାତା ଲକ୍ଷ୍ମୀଙ୍କ ନିଜ ପାର୍ଶ୍ୱରେ ଅବସ୍ଥାନ ପାଇଁ ପ୍ରାର୍ଥନା କରନ୍ତେ 'ମା' ତାଙ୍କ ପ୍ରାର୍ଥନାରେ ପ୍ରସନ୍ନ ହୋଇ କହିଲେ "ତୋମାତେ ଚାରିଭାଗରେ ବିଭକ୍ତ କର ... ।" ତହୁଁ ଇନ୍ଦ୍ର ଉତ୍ତରିଲେ—ଧରଣୀ ହେଉ ତୁମର ପ୍ରଥମ ଅଂଶ, ଜଳ ଦ୍ୱିତୀୟ, ଅଗ୍ନି ତୃତୀୟ ଏବଂ ସାଧୁ—ସତ୍ୟବାଦୀ, ବ୍ରହ୍ମନିଷ୍ଠ ବ୍ୟକ୍ତିମାନଙ୍କ ପାଖରେ ଆପଣଙ୍କର ଚତୁର୍ଥ ଅଂଶ ସ୍ଥାପନ କରୁଛି ।

ଇନ୍ଦ୍ରଙ୍କ ପ୍ରାର୍ଥନାରେ ଦେବୀ ସନ୍ତୁଷ୍ଟ ହୋଇ ତାଙ୍କୁ ରାଜ୍ୟର ଐଶ୍ୱର୍ଯ୍ୟ, ସଂଗ୍ରାମରେ ବିଜୟ ଆଦି ଅଭିଷ୍ଟ ପ୍ରଦାନ କରିଥିଲେ ।

## ପୁରାଣ ବର୍ଣ୍ଣିତ ଲକ୍ଷ୍ମୀପୂଜା ଓ ତାର ସୁଫଳ

ଜଗନ୍ମାତା ଲକ୍ଷ୍ମୀଙ୍କ ପୂଜା କିଏ କିପରି କେବେ କରିଥିଲେ—ତାର ଏକ ପୌରାଣିକ ଆଖ୍ୟା ନିମ୍ନରେ ପ୍ରଦତ୍ତ କରାଯାଇଛି ମାତ୍ର ତାର ପ୍ରତିଫଳନ ଆମ ଉପରେ ପଡ଼ିଛି କି ନାହିଁ ସେ ବିଷୟରେ ଏଠାରେ ଆଲୋଚନା ହେଉନାହିଁ ।

୧ । ବୈକୁଣ୍ଠରେ ସର୍ବ ପ୍ରଥମେ ପ୍ରଭୁ ଭଗବାନ ନାରାୟଣ ମହାଲକ୍ଷ୍ମୀଙ୍କ ପୂଜା ଅର୍ଚ୍ଚନା ଆରମ୍ଭିଲେ । ତାଙ୍କ ଆଦର୍ଶକୁ ମାନିନେଇ ଦେବତା ଓ ଗନ୍ଧର୍ବ କୁଳ ସ୍ୱର୍ଗ ଲୋକ ମାତାଲକ୍ଷ୍ମୀଙ୍କୁ ପୂଜା କରିବାକୁ ଲାଗିଲେ । ମର୍ତ୍ତ୍ୟର ନରପତି ଓ ଋଷିମୁନି ମାନେ ମାଆଙ୍କ ଆରାଧନା

କରି ଥିଲା ବେଳକୁ ପାତାଳରେ ନାଗଲୋକ ମାନେ ମାଆଙ୍କ ପୂଜା କଲେ ।

୨ । ବେଦବର ବ୍ରହ୍ମା ମାଆଲକ୍ଷ୍ମୀଙ୍କୁ ଭାଦ୍ରମାସ ଶୁକ୍ଳ ଅଷ୍ଟମୀରେ ପୂଜା କରିବାକୁ ଆରମ୍ଭକଲେ କିନ୍ତୁ ବିଷ୍ଣୁ ଚୈତ୍ର-ପୌଷ-ଭାଦ୍ର ମାସ ମାନଙ୍କର ମଙ୍ଗଳବାର ଦିନ ମାନଙ୍କରେ ଲକ୍ଷ୍ମୀପୂଜା କରି ତାଙ୍କୁ ଆରାଧନା କଲେ ।

ତତ୍‌ପରବର୍ତ୍ତୀ କାଳରେ ମଙ୍ଗଳ ନୃପତି ଲକ୍ଷ୍ମୀଙ୍କୁ ମଙ୍ଗଳ ରୂପେ ଧ୍ୟାନକରି ପୂଜାଅର୍ଚ୍ଚନା କରି ସପ୍ତଦ୍ୱୀପା ପୃଥିବୀର ଅଧିପତି ହୋଇ-ଥିଲେ । ସେଥିପାଇ ଦେବୀ ଲକ୍ଷ୍ମୀ ସର୍ବମଙ୍ଗଳା ନାମରେ ଖ୍ୟାତ ହେଲେ ।

୩ । ବର୍ଷଶେଷ ପୌଷ ସଂକ୍ରାନ୍ତିରେ ମନୁ ନରପତି ଲକ୍ଷ୍ମୀଙ୍କୁ ପୂଜାକରି ଚକ୍ରବର୍ତ୍ତୀ ହୋଇଥିଲେ ।

## କେଉଁ ଦିନ ଲକ୍ଷ୍ମୀଙ୍କ ପୂଜା ପଡେ

୧ । ବର୍ଷର ପ୍ରତ୍ୟେକ ଗୁରୁବାରକୁ ଲକ୍ଷ୍ମୀବାର କହନ୍ତି ଏବଂ ଏହିଦିନ ଲକ୍ଷ୍ମୀଙ୍କ ପୂଜା କଲେ ଧନଧାନ୍ୟ ଓ ଯଶର ଅଧିକାର ମିଳେ ।

୨ । ବର୍ଷ ମଧ୍ୟରେ ଶୁକ୍ଳପକ୍ଷ ଦଶମୀ ତିଥିରେ ଗୁରୁବାର ପଡିଲେ ତାହା ସୁଦଶାବ୍ରତ ନାମେ ଉତ୍କଳରେ ସର୍ବତ୍ର ପାଳିତ ହୁଏ ।

୩ । ଶୁକ୍ଳ ଏକାଦଶୀ ତିଥି ଗୁରୁବାର ପଡିଲେ ସେ ଦିନ ଲକ୍ଷ୍ମୀ ନାରାୟଣ ପୂଜା ହୁଏ ।

୪ । ଶୁକ୍ଳ ପଂଚମୀ ତିଥିରେ ଗୁରୁବାର ପଡିଲେ ଗୁରୁ ପଂଚମୀ ବ୍ରତରୂପେ ଲକ୍ଷ୍ମୀପୂଜା କରାଯାଏ ।

୫ । ଆଷାଢ଼ ଶୁକ୍ଳ ପଞ୍ଚମୀ ତିଥିରେ ହେରାପଞ୍ଚମୀ ବା ଲକ୍ଷ୍ମୀ ବିଜୟ ଉତ୍ସବ ପାଳନ କରାଯାଏ ।

୬ । ବୈଶାଖ ଶୁକ୍ଳ ନବମୀ ଗୁରୁବାର ଦିନ ସୀତା ଅବତୀର୍ଣ୍ଣା ହୋଇଥିଲେ ବୋଲି ସେ ଦିନ ସୀତାଙ୍କର ଏକ ଅବତାର ଲକ୍ଷ୍ମୀଙ୍କ ଉଦ୍ଦେଶ୍ୟରେ ଲକ୍ଷ୍ମୀ ନବମୀ ପାଳିତ ହୁଏ ।

୭ । ମାର୍ଗଶୀର ମାସ ପ୍ରତ୍ୟେକ ଗୁରୁବାର ଦିନ ମହାଲକ୍ଷ୍ମୀ ବ୍ରତ ଘରେ ଘରେ ସ୍ତ୍ରୀ ଲୋକମାନେ ପାଳନ କରନ୍ତି ।

୮ । କାର୍ତ୍ତିକମାସ ଦିପାବଳୀ ଅମାବାସ୍ୟା ଦିନ ମଧ୍ୟ ଲକ୍ଷ୍ମୀଙ୍କ ପୂଜା ଅନୁଷ୍ଠିତ ହୁଏ ।

୯ । ଶରତ ପୂର୍ଣ୍ଣିମା ଦିନ କୁମାର ପୂର୍ଣ୍ଣିମାରେ ଗଜଲକ୍ଷ୍ମୀ ପୂଜା ଉତ୍କଳର ଏକ ପ୍ରଧାନପର୍ବ ।

ଉତ୍କଳର ଘରେ ଘରେ ହିନ୍ଦୁଧର୍ମାବଲମ୍ବୀ ମାନେପ୍ରତ୍ୟହ ମାଆ-ଲକ୍ଷ୍ମୀଙ୍କ ପୂଜା ଓ ପୁରାଣପାଠ କରନ୍ତି ଏବଂ ମାଆଙ୍କୁ ଧ୍ୟାନ କରନ୍ତି —

ପଦ୍ମାସନସ୍ଥିତେ ଦେବୀ ପରଂବ୍ରହ୍ମ ସ୍ୱରୂପିଣୀ,
ପରମେଶ ଜଗନ୍ମାତା ମହାଲକ୍ଷ୍ମୀ ନମୋଽସ୍ତୁତେ ।



# ଭାରତୀୟ ସଂସ୍କୃତିରେ ମହାଲକ୍ଷ୍ମୀ

ସ୍ମିତପ୍ରଜ୍ଞା ମିଶ୍ର

"ହେଥାୟ ଆର୍ଯ୍ୟ ହେଥା ଅନାର୍ଯ୍ୟ ହେଥାୟ ଦ୍ରାବଡ଼ଚୀନ୍
ଶକହୁନଦଲ ପାଠାନ୍ ମୋଗଲ ଏକ ଦେହେ ହଲଲୀନ୍
ପଶ୍ଚିମ ଆଜି ଖୁଲିୟାଛେ ଦ୍ୱାର ସେଥା ହାତେ
ସବେ ଆନେ ଉପହାର
ଦେବେ ଆର ନେବେ, ମିଲାବ ମିଲିବେ, ଯାବେ ନାଫିରେ
ଏଇ ଭାରତରେ ମହାମାନବେର ସାଗରତୀରେ ।"

ପ୍ରାଗୈତିହାସିକ ଯୁଗର ନିବିଡ଼ ଅନ୍ଧକାରକୁ ବିଦୂରିତ କରି ଏକ ପୌରାଣିକ ଯୁଗର ପାର୍ଥିବ ରହସ୍ୟର ଅବଗୁଣ୍ଠନକୁ ଉନ୍ମୋଚନ କରି ସୃଷ୍ଟି ଏହି ବେଦୋତ୍ତର କାଳୀନ ମୁନିକୁଟିରର ପ୍ରାଙ୍ଗଣସ୍ଥ ଲଳିତ-କଳିତ-ସହକାର-ଶାଖା-ମୁକୁଳିତ-ନିର୍ବାତ ନିଷ୍କମ୍ପ ଦୀପଶିଖା ତୁଲ୍ୟ ଯାଗ-ଯଜ୍ଞୋତ୍ଥିତ ଧୂମରେ ଆବୃତ ହେବା ସଙ୍ଗେ ସଙ୍ଗେ ସ୍ୱଭାବ ସୁନ୍ଦର ମାନବ ଧର୍ମକୁ ଗ୍ରହଣ କରିବା ଅଭିପ୍ରେକ୍ଷୀରେ ସେହି ଦ୍ରାବିଡ଼ ଆର୍ଯ୍ୟ ଉପମହାଦେଶୀୟ ସଂସ୍କୃତିରେ ଐକାନ୍ତିକ ହୋଇ ସଂସ୍କୃତିର ଉଦ୍‌ଘାଟନ କରନ୍ତି— ସେଥିରେ ସର୍ବଶକ୍ତିର ଆଧାର ଦେବଦେବୀ ପୂଜାର ପ୍ରାଧାନ୍ୟ ଏକାନ୍ତ ଭାବରେ ପରିଦୃଷ୍ଟ ହୋଇଥାଏ । ଯାହାକି ମାନବ କେଉଁ ଅନାଦି ଅନନ୍ତ କାଳରୁ ଅଦ୍ୟାବଧି ସେହି ପୂଜା କରି ଆସୁଅଛି । ଆର୍ଥର ଏବେଲନ୍‌ଙ୍କ ମତରେ :—

"Hymns to the Goddess praface".

ଉତ୍ତର ପୂର୍ବେ ପରେ ପ୍ରାଚୀନ ଧର୍ମରେ ପ୍ରମୁଖ ଦ୍ୱାଦଶ ସଂଖ୍ୟକ ଦେବ ଏବଂ ଅଷ୍ଟ ସଂଖ୍ୟକ ଦେବୀଙ୍କ ଅନ୍ତର୍ଭୁକ୍ତ ଅନେକ ଦେବୀ ମଧ୍ୟ ସ୍ୱୀକୃତ । ଏହି ପରିପ୍ରେକ୍ଷୀରେ ଦେବୀ ପୂଜାର ଲୋକ ପ୍ରିୟତା ଦୃଷ୍ଟିରୁ ଆଜି ଆମ ଦେଶରେ ସର୍ବାଧିକ ପୂଜାଅର୍ଚ୍ଚନା । ଦୁର୍ଗା, କାଳୀ, ସରସ୍ୱତୀ, ଲକ୍ଷ୍ମୀ ଏହି ଚତୁର୍ଦେବୀଙ୍କୁ ପୂଜନ ହେଉଛି । ଭାରତୀୟ ସଂସ୍କୃତିରେ ଏହି ଦେବୀ ପୂଜା ବହୁ ପ୍ରାଚୀନ । ମହେଞ୍ଜୋଦାରୋ ହରପ୍ପା ଖୋଦନରୁ ବହୁ ନାରୀ ମୂର୍ତ୍ତି ପ୍ରାପ୍ତ ହୋଇଛି । ପ୍ରତ୍ନତତ୍ତ୍ୱବିତ୍ ମାନଙ୍କ ମତରେ ଏହା ମହାମାତୃଦେବୀଙ୍କ ମୂର୍ତ୍ତି ଅଟେ ଏବଂ ବେଲୁଚିସ୍ଥାନ, ପଶ୍ଚିମ ଏସିଆ, ଭୂମଧ୍ୟ ସାଗରର ଇଜିପ୍ଟ, ତଟ ମେସୋ-ପଟାମିଆ, କାସ୍ପିୟାନ ସମୁଦ୍ର ତଟ, ଏସିଆ ମାଇନର, ସିରିଆ, ପିଲିସ୍ତାନ, ସାଇପ୍ରସ୍, ମିଶର ଦେଶରେ ବହୁ ସଂଖ୍ୟାରେ ପ୍ରାପ୍ତ ହୋଇ ଥିବା ଧ୍ୱଂସାବଶେଷ ମୂର୍ତ୍ତୀ ସମୂହର ଅନୁରୂପ ଅଟେ । ଐତିହାସିକ R. C. Majumdar, H. C. Raychoudhury, Kalinkar Dutta ପ୍ରାମାଣିକ ତଥ୍ୟ ସଂଗ୍ରହ କରି ମନ୍ତବ୍ୟକ୍ତ କରିଛନ୍ତି ଯେ :—

"The objects found at Mahenjodaro also teaches us something about the religious faiths and beliefs of the people. The cult of Divine mother seems to have been prevailant and many figurines of this Mother Goddess have come to light. This cult may not be exactly the same as the sakti-worship of later days; but fundamental ideas appear to be same, the belief in a female energy was the source of all creation." ପ୍ରମୁଖ ଦେବୀ ମାନଙ୍କ ମଧ୍ୟରେ ଲକ୍ଷ୍ମୀ, ଦୁର୍ଗା, କାଳୀ, ସରସ୍ୱତୀଙ୍କର ଅନେକ ରୂପ ପ୍ରାପ୍ତ ହୁଏ ।

ଦିବ୍ୟଦ୍ରଷ୍ଟା ଭାରତୀୟ ଆର୍ଯ୍ୟମନୀଷୀଗଣ ଧାର୍ମିକ ଆଧ୍ୟାତ୍ମିକ ଓ ପାରମାର୍ଥିକ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ହୋଇ କାଳର

ନାନା ଆବର୍ତ୍ତନ ବିବର୍ତ୍ତନ, ଉତ୍ଥାନ ପତନ ମଧ୍ୟରେ ଏହି ସର୍ବଂସହା ଧରିତ୍ରୀକୁ ସୁଜଳା-ସୁଫଳା କରି ପ୍ରକୃତିର ଅପୂର୍ବ ସୌନ୍ଦର୍ଯ୍ୟର ରହସ୍ୟପୂର୍ଣ୍ଣ ସମ୍ଭାର ଭିତରେ ଏକ ଉତ୍ତମ ମାନବ ସମାଜର ସୃଜନ ନିମିତ୍ତ ଉଦ୍‌ବେଳିତ ଚିତ୍ତର୍ଦ୍ଦେବଙ୍କ ମଧ୍ୟରେ ଲକ୍ଷ୍ମୀଦେବୀଙ୍କୁ ଆରାଧନା କରି ମନ୍ତ୍ରପୂତ ପ୍ରାଣରେ ଉଚ୍ଚାରଣ କରନ୍ତି :—

"କମଳେ କମଳାରୂଢେ ଭୁକ୍ତି-ମୁକ୍ତି-ପ୍ରଦାୟିନି ।
ତ୍ରିଲୋକପାଳନ ! ଦେବି ! ଶରଣଂ ତ୍ୱଂ ନମାମ୍ୟହମ୍ ॥
ସଦେହି ଦେବି ! କଲ୍ୟାଣଂ କୁରୁଷ୍ୱ ଜନମଙ୍ଗଳଂ
ମମାଭୀଷ୍ଟ ପ୍ରଜାଭୂତ୍ୱା ବାଞ୍ଛିତାର୍ଥଂ ଚ ଦେହିମେ ॥
ବିଶ୍ୱରୂପସ୍ୟ ଭାର୍ଯ୍ୟାସି ପଦ୍ମେ ପଦ୍ମାଳୟେ ଶୁଭେ
ସର୍ବତୋ ପାହିମାଂ ଦେବୀ ମହାଲକ୍ଷ୍ମୀ ନମୋଽସ୍ତୁତେ ॥"

ତେଣୁ ବିଶ୍ୱରୂପ ଧାରିଣୀ ତ୍ରିଲୋକ ପାଳନ କର୍ତ୍ତ୍ରୀ, ମୋକ୍ଷ-ପ୍ରଦାୟିନୀ ସେହି ଜଗଦଜନନୀ ଲକ୍ଷ୍ମୀ ସଂସାରକୁ ରକ୍ଷା କରିବା ନିମିତ୍ତ ତାଙ୍କୁ ସନାତନ ଋଷିଗଣ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ବିନମ୍ର ନିବେଦନ କରନ୍ତି ।

ଆଜି ଉପାସକ ବୃନ୍ଦ ତାଙ୍କୁ କେବଳ ଶକ୍ତିମୟୀ ରୂପେ ଆବାହନ କରି ନାହାନ୍ତି, ଅଧିକନ୍ତୁ ଆଦ୍ୟମାତା ବା ଆଦ୍ୟଶକ୍ତି ରୂପେ ସୁଖଦା ଅଭୟ ବରଦା ରୂପରେ ମଧ୍ୟ ଉପାସନା କରିଛନ୍ତି । ସେ ମହାଲକ୍ଷ୍ମୀ-ମହାସରସ୍ୱତୀ ପୁନଶ୍ଚ କମଳା-ବିମଳା । ଉପାସନାର ସ୍ତୁତି ପାଠ ମଧ୍ୟରେ ଲକ୍ଷ୍ମୀ ସର୍ବବ୍ୟାପୀ, ସର୍ବଶକ୍ତିମୟୀ, ଶକ୍ତିରୂପିଣୀ, ମାତୃରୂପିଣୀ ଓ ଶାନ୍ତି ରୂପିଣୀ । ଯଥାର୍ଥରେ ସେ ଜଗଦଜନନୀ-ଭଗବତୀ-ଭୁବନେଶ୍ୱରୀ ରାଜରାଜେଶ୍ୱରୀ ସର୍ବଶକ୍ତି ସର୍ବମୋକ୍ଷ ପ୍ରଦାୟିନୀ-ଜଗନ୍ମାତା-ବିଶ୍ୱବିଧାତ୍ରୀ-ଆଦ୍ୟଶକ୍ତି ପ୍ରଦାୟିନୀ-ମଙ୍ଗଳମୟୀ ସର୍ବଶକ୍ତିମୟୀ ଜଗଧାତ୍ରୀ । ତେଣୁ ଶ୍ଳୋକାକାରଙ୍କର ମୁଖରୁ ନିସୃତ ହୁଏ :—

"ତ୍ରୈଲୋକ୍ୟ ପୂଜ୍ୟତେ ଦେବୀ କମଳେ ବିଷ୍ଣୁ ବଲ୍ଲଭେ
ଯଥା ତ୍ୱଂ ସୁସ୍ଥିରିକୃଷ୍ଣେ ଯଥାଭବ ମହସ୍ଥିରୀ

କ୍ଷୀରାବ୍ଧି କମଳା ଲକ୍ଷ୍ମୀ ଚଞ୍ଚଳାଶ୍ରୀ ହରପ୍ରିୟା
ପଦ୍ମାପଦ୍ମାଳୟା ସମ୍ପତ୍ତି ଚ ଶ୍ରୀ ପଦ୍ମଧାରିଣୀ
ଦ୍ୱାଦଶୈତାନି ନାମାନି ଲକ୍ଷ୍ମୀଂ ସମ୍ପୂଜ୍ୟ ଯଃ ପଠେତ୍
ସ୍ଥିର ଲକ୍ଷ୍ମୀ ଭବେତ୍ତସ୍ୟ ପୁତ୍ରଦାରା ବ୍ରଭିଃସହ ।"

ଏହି ସ୍ତୋତ୍ରର ଅନ୍ତର୍ନିହିତ ଗୂଢ଼ ଅର୍ଥ ଭାରତୀୟ ଧର୍ମ, ସଂସ୍କୃତି, ଚେତନା ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ସମ୍ପର୍କରେ ଚିରନ୍ତନ ମହାନ୍ ସତ୍ୟ ସଙ୍କେତ ଭାବରେ ବହନ କରିଥାଏ ।

ବର୍ଷାଣାଂ ଭାରତ ଶ୍ରେଷ୍ଠଃ ଦେଶାଂ ଉତ୍କଳ ସ୍ମୃତଃ
ଉତ୍କଳସ୍ୟ ସମୋଦେଶଃ ଦେଶେ ନାସ୍ତି ମହୀତଳେ ।"

ମହାଭାରତ, ରାମାୟଣ, ପୁରାଣ, ବୌଦ୍ଧ ସାହିତ୍ୟରେ ବର୍ଣ୍ଣିତ ସାଗର ବିଧୌତା ଚରଣା ବନଗିରି-ନିର୍ଝର ଶୋଭନା-ମନୋରମା ଗୌରବାବହ ଏହି ଉତ୍କଳର ହିନ୍ଦୁମାନଙ୍କ ମହନ୍ତ ପରମ୍ପରା ପୂର୍ଣ୍ଣ ସଂସ୍କୃତିରେ ଲକ୍ଷ୍ମୀପୂଜା ଶ୍ରେଷ୍ଠ ଉପାସନାର ପ୍ରସିଦ୍ଧିଲାଭ କରିଛି । ଉତ୍କଳର ଧାର୍ମିକ ଇତିହାସ ଧାରାବାହିକ ଭାବରେ ଲିପିବଦ୍ଧ ହୋଇନଥିବାରୁ ଠିକ କେଉଁ ସମୟରୁ ଏହି ଉପାସନା ଜନସମାଜରେ ଆଦୃତ ଓ ପ୍ରଚଳିତ ହୋଇ ଆସୁଅଛି — ସେ ସମ୍ବନ୍ଧରେ କୌଣସି ସର୍ବସମ୍ମତ ମତପ୍ରକାଶ ପାଇନାହିଁ । କେତେକ ପୁରାଣକାରଙ୍କ ମତରେ ଉତ୍କଳରେ ଏହି ଲକ୍ଷ୍ମୀ ପୂଜାର ପରମ୍ପରା ଅତ୍ୟନ୍ତ ପ୍ରାଚୀନ । ଲକ୍ଷ୍ମୀପୂଜା ଅତ୍ୟନ୍ତ ଭକ୍ତିର ସହ ଉପାସନା କରାଯାଏ । ଉତ୍କଳ ଗୃହିଣୀ କଣ୍ଠରୁ ନିଗତ ହୁଏ :—

"ନମସ୍ତେ କମଳା ମାଗୋ ସାଗର ଦୁଲଣୀ
ନମସ୍ତେ ନମସ୍ତେ ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ
ନମସ୍ତେ କମଳାଳୟା ଅତି ଦୟାବନ୍ତି
ସ୍ଥାବର ଜଙ୍ଗମ କୀଟ ଆଦି ପାଳ ମାତ
ତୋର ଦୟାବଳେ ମାଗୋ ଦରିଦ୍ର ଜନର
ହୁଅଇ ଅଚଳ ବିତ୍ତ ଜିଣଇ କୁବେର
ତୋର ଦ୍ରୋହୀ ଜନେ ମାଗୋ ଅନ୍ନ ନମିଳଇ ।"

ଯେତେ ଅରକ୍ଷିଲେ କେତେ ଯେଣ ନପୂରଇ
ତୋହର ଚରିତ ମନଦେଇ ଯେ ଶୁଣଇ
କି ଅବା ଭକତି ଭାବେ ସର୍ବଦା ଗୁଣଇ
ତାହାର ଦରିଦ୍ରପଣ ଯାଏ ଦୂରହୋଇ
ସର୍ବଦା ପ୍ରସନ୍ନ ହୁଅ ତାକୁ ମହାମାଈ ।    (ଲକ୍ଷ୍ମୀପୁରାଣ)

ଲକ୍ଷ୍ମୀମାତା ଉତ୍କଳୀୟ ଗୃହାଙ୍ଗନକୁ ବିଜେ କରିବା ପାଇଁ ଏହା ଅତ୍ୟନ୍ତ ପ୍ରକୃଷ୍ଟ ସମୟ । ଜନବିଶ୍ୱାସ ଅଛି ଯେ ଜଗତ୍‌ଜନନୀ ଲକ୍ଷ୍ମୀ ହସ୍ତୀ ଉପରେ ଉପବେଷ୍ଟିତା ହୋଇ ରାତ୍ରିକାଳେ ବିଜେ କରିଥାନ୍ତି ଏବଂ ଯେଉଁମାନେ ରାତ୍ରିରେ ସେହି ସମୟରେ ଜାଗ୍ରତ ରହିଥାନ୍ତି ମା ଲକ୍ଷ୍ମୀ ସେମାନଙ୍କୁ ଆଶୀର୍ବାଦ ପ୍ରଦାନ କରିଥାଆନ୍ତି । ସେଥିପାଇଁ ସଂସ୍କୃତରେ କୁହାଯାଇଛି—

"ନିଶୀଥେ ବରଦା ଲକ୍ଷ୍ମୀ
 କୋଜାଗରିଁତି ଭାଷିନି
ତସ୍ମୈ ବିତ୍ତମ୍ ପ୍ରୟଚ୍ଛାମି
 ଅକ୍ଷୈଃ କ୍ରୀଡ଼ା କରୋତି ଯଃ ।"

(ଯେଉଁମାନେ ସାରା ରାତି ଉଜାଗର ରହି ପଶା ଖେଳନ୍ତି, ଲକ୍ଷ୍ମୀ ଠାକୁରାଣୀ ସେମାନଙ୍କୁ ବରପ୍ରଦାନ କରନ୍ତି ।) କାଶହାସମୟୀ ପ୍ରଶାନ୍ତ ଶରତ କାଳର ଶ୍ୟାମଳିମା ମରକତ ଶସ୍ୟ ଶୋଭାରେ ପୂରିପର୍ଣ୍ଣ ଶସ୍ୟକେଦାର ମଧ୍ୟରେ ଅପୂର୍ବ ସବୁଜିମା ନବୋଦ୍‌ଭିନ୍ନ ପ୍ରମତ୍ତ ଯୌବନ କ୍ରୀଡ଼ା କରୁଥିବା ବେଳେ ଜଗଦଜନନୀ ଲକ୍ଷ୍ମୀଙ୍କର ଉପାସନା ଅତ୍ୟନ୍ତ ସମୟୋପଯୋଗୀ ।

"ଆଷାଢ଼ସ୍ୟ ପ୍ରଥମ ଦିବସେ ମେଘମାଶ୍ଲିଷ୍ଟସାନୁଂ
ବପ୍ରକ୍ରୀଡ଼ା ପରିଣତ ଗଜଂ ପ୍ରେକ୍ଷଣୀୟଂ ଦଦର୍ଶ ।"

ଆଦ୍ୟ ଆଷାଢ଼ର ମେଘମେଦୁରାମ୍ବର ଗଗନ ତଳେ ବଜ୍ରର ଗୁରୁଗମ୍ଭୀର ନାଦ ଶ୍ରବଣ କରି ନିଦାଘର ଧାପିତ୍ତନରେ ପ୍ରିୟମଣା

ଧୂସର ପୃଥିବୀ ପୁନର୍ବାର ସୃଜନର ନବୀନ ସ୍ୱପ୍ନରେ ଉନ୍ମତ୍ତ ହୋଇ ଉଠିବା ଭୁଲି ଜଗଦଜନନୀ ମହାଲକ୍ଷ୍ମୀଙ୍କର ମହୋତ୍ସବର ମହାଆଡମ୍ବର ରେ ସୌନ୍ଦର୍ଯ୍ୟର ନରପୂଜାରୀ ମାନବ ଆତ୍ମବିସ୍ମୃତ ଭାବରେ ସତ୍ୟ-ଶିବ-ସୁନ୍ଦର ଆବାହନୀ କରେ ଏବଂ ବହିର୍ଜଗତ ସହିତ ଅନ୍ତ-ର୍ଜଗତକୁ ତୁଳନା କରି ଉଭୟ ମଧ୍ୟରେ ଐକ୍ୟର ସନ୍ଧାନ କରି ଗାନ କରିଉଠେ :—

"ନମସ୍ତେଽସ୍ତୁ ମହାମାୟେ ଶ୍ରୀପୀଠଂ ସୁର ପୂଜିତେ
ଶଙ୍ଖ ଚକ୍ର ଗଦା ହସ୍ତେ ମହାଲକ୍ଷ୍ମୀ ନମସ୍ତୁତେ
ନମସ୍ତେ ଗରୁଡ଼ା ରୂଢ଼େ କୋଳାସୁର ଭୟଙ୍କରୀ
ସର୍ବପାପ ହରେ ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ
ସର୍ବଜ୍ଞେ ସର୍ବବରଦେ ସର୍ବଦୁଷ୍ଟ ଭୟଙ୍କରୀ
ସର୍ବ ଦୁଃଖ ହରେ ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ
ସିଦ୍ଧି ବୁଦ୍ଧି ପ୍ରଦେଦେବୀ ଭକ୍ତି ମୁକ୍ତି ପ୍ରଦାୟିନୀ
ମନ୍ତ୍ରମୂର୍ତ୍ତେ ସଦା ଦେବୀ ମହାଲକ୍ଷ୍ମୀ ନମଃସ୍ତୁତେ ।"

ଜଗତର ସବୁ ବ୍ୟଥା, କ୍ଲେଶକୁ ବିଦୁରିତ କରି ଜଗଦଜନନୀ ଲକ୍ଷ୍ମୀ ମୂକ କଣ୍ଠରେ ଆନସ୍ୱନ କରନ୍ତି ମୁକ୍ତିରିତା, ଉଲ୍ଲାସ । ପଲ୍ଲୀର ଶୁଷ୍କ ନୀରସ ଧୂସର ବକ୍ଷ ଉପରେ ନୂତନ ଶ୍ୟାମଳିମା ଆଚ୍ଛାଦିତ ହୋଇ ଯାଏ । ସୁପ୍ତସ୍ପନ ନିଷ୍ପ୍ରାଣ ବନାନୀ ଉପକଣ୍ଠରେ ପ୍ରାଣରେ ପ୍ରାଚୁର୍ଯ୍ୟ ଭରିଯାଏ ଏବଂ ପୃଥିବୀରେ ସେ କଳକଲ୍ଲୋଳରେ ମୁଖରିତ ହୋଇଉଠେ ଏକ ସ୍ୱର୍ଗୀୟ ଅହ୍ୱାନରେ :—

"ସର୍ବେ ଭବନ୍ତୁ ସୁଖୀନଃ
ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣି ପଶ୍ୟନ୍ତୁ
ମା କଶ୍ଚିଦ୍ ଦୁଃଖଭାକଭବେତ୍ ।"



ଲକ୍ଷ୍ମୀବଜାର ୧୯୫୦ମସିହାରେ ନିର୍ମିତ ମହାଲକ୍ଷ୍ମୀ ପ୍ରତିମା, ତାଙ୍କ ପାଦଦେଶରେ ଉପବେଷ୍ଟିତ ପୂଜା ପ୍ରତିଷ୍ଠାନର କର୍ମକର୍ତ୍ତା ବୃନ୍ଦ



କୈବଲ୍ୟ ବଜାର—୧୯୮୩ ମସିହାର

ଶ୍ରୀ ଶ୍ରୀ ମହାଲକ୍ଷ୍ମୀଙ୍କ ପ୍ରତିମା ଓ ପୂଜା କମିଟିର ସଦସ୍ୟ ବୃନ୍ଦ

କର୍ମକ୍ଳାନ୍ତ ଦୁଃଖ ଦୈନ୍ୟାହତ ଉତ୍କଳୀୟ ସାମାଜିକ ଜୀବନରେ ଋତୁଚକ୍ରର ସାମୟିକ ଆବର୍ତ୍ତନ କ୍ରମେ ନାନାବିଧ ଉତ୍ସବ ମହୋତ୍ସବର କ୍ରମରେ ମହାଲକ୍ଷ୍ମୀ ପୂଜା ନିଃସ୍ୱର୍ଗର ବୈବିଧ ସଦୃଶ ପାରମ୍ପରିକ କ୍ରମରେ ଏହି ବହୁବିଧ ଉତ୍କଳୀୟ ପ୍ରାଣର ଶାଶ୍ୱତ ପିପାସା ଧାରା ଏକ ସ୍ୱଚ୍ଛନ୍ଦ ରୂପାୟନ । ତେଣୁ ସେହି ସରଳ ଚପଳ ଛନ୍ଦହୀନ ଉତ୍କଳୀୟ ହୃଦକନ୍ଦରରୁ ସେହି ବସୁଧାରୀ-ପରିତ୍ରାଣକାରୀ ଜଗଦଜନନୀ ଲକ୍ଷ୍ମୀଙ୍କ କୃପାଲାଭ ଉଦ୍ଦେଶ୍ୟରେ ଉଦ୍‌ଗତ ହୁଏ ସେହି ଅମୃତ ସ୍ୱର୍ଗୀୟ ପ୍ରାର୍ଥନା ବାଣୀ '—

"ନମୋ ମହାଲକ୍ଷ୍ମୀ ଓଁକାର ରୂପିଣୀ
ନମସ୍ତେ ବସ୍ତୁଙ୍କ ଘରଣୀ
ନମୋ ପଦ୍ମବାସିନୀ ଜଗତ ପାଳନୀ
ନମସ୍ତେ ମାତ ପଦ୍ମାସନୀ
ଜନନୀ, ବାରେ ଶୁଣ ମୋର ଜଣାଣ
ଦୁଃଖ ସାଗରରେ ଭାସୁଅଛି ମୁହିଁ
କର ମା ମୋତେ ପରିତ୍ରାଣ ।"

ହେ ମା ଲକ୍ଷ୍ମୀ ! ତୁମେ ଓଡ଼ିଆ ଜାତିର ଚିର ଆରାଧ୍ୟା । ତୁମରି ଅନୁଗ୍ରହରୁ କାଳେ କାଳେ ଉତ୍କଳୀୟ ମାନେ ବୀରଜାତି ରୂପେ ଖ୍ୟାତି ଲାଭ କରି କାହିଁ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଅତିକ୍ରମ କରି ଐଶ୍ୱର୍ଯ୍ୟ ସମ୍ଭାର ଆନୟନ କରି ଏ ଜାତିକୁ କରିଥିଲେ ସମୃଦ୍ଧଶାଳୀ ବିଭବଶାଳୀ । ମାତ୍ର ଆଜି ଏ ଜାତି ହତୋତ୍ସାହ ଦୁର୍ବଳ ଚେତନୋନ୍ମୁଖ ହୋଇଥିବା ବୋଧହୁଏ । ମାତ୍ର ଆଜି ତୁମର ମହୋତ୍ସବରେ ଏ ଜାତି ଉପରେ କୃପାବଶ ହୋଇ ଏ ଜାତିକୁ ପୂର୍ବ ଗୌରବ ଭୁଲି ଶ୍ରେଷ୍ଠ ହେବାପାଇଁ ବର ପ୍ରଦାନ କର । ତାର ଶସ୍ୟକ୍ଷେତ୍ରକୁ ସମ୍ଭାର କର । ତାର ଶିରେ ଶିରେ ପ୍ରତି ଛନ୍ଦେ ଛନ୍ଦେ ପୂର୍ଣ୍ଣ କରିଦିଅ ଅଲୌକିକ ଅସୀମ ସ୍ୱର୍ଗୀୟ ଶକ୍ତି ଓ ପୁଲକ । ତାକୁ ଅଗ୍ରସର କରାଅ ଆଗକୁ-ନୂତନ ଜୀବନର ସନ୍ଧାନରେ··· ।



# ଧନଦାତ୍ରୀ ଲକ୍ଷ୍ମୀ

ଶ୍ରୀ ପରଶୁରାମ ମହାପାତ୍ର

ଅନ୍ନାଦ୍‌ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନ ସମ୍ଭବଃ
ଯଜ୍ଞାଦ୍‌ଭବତି ପର୍ଜନ୍ୟୋ ଯଜ୍ଞଃ କର୍ମସମୁଦ୍‌ଭବଃ ।। ଗୀତା ।

ଅନ୍ନମଧ ବ୍ରହ୍ମ ରୂପେ ପ୍ରଖ୍ୟାତ । ଏହି ଅନ୍ନର ଜନମ ଧାନ୍ୟ । ହିନ୍ଦୁ ଦର୍ଶନରେ ଏହି ଧାନ୍ୟକୁ 'ଲକ୍ଷ୍ମୀ' ରୂପେ ପୂଜା କରାଯାଏ । ସାଧାରଣରେ ଏହି ଧାନ୍ୟ 'ଅକ୍ଷୟ ବୀଜ' ରୂପେ ପ୍ରତିଷ୍ଠିତ । ପବିତ୍ର ଅକ୍ଷୟ ତୃତୀୟା ଦିବସରେ ଶକ୍ତି ରୂପିଣୀ କୃଷକ ଗୃହିଣୀ ତା'ର ଅତି ଗୋପନୀୟ ଗୁରୁବାର ଗୁବାଳ ସଞ୍ଚିତ ଏହି ଅକ୍ଷୟ ବୀଜକୁ ସ୍ୱାମୀ ହସ୍ତରେ ପ୍ରଦାନ କରେ । ତା'ର ସେତେବେଳର ବେଶ ଦେଖିଲେ ମନେହୁଏ ସତେ ଯେପରି ବୀରରମଣୀ ତା'ର ସ୍ୱାମୀକୁ ଜଗତ୍‌କର୍ତ୍ତା ବିଷ୍ଣୁ ପରି ପୂଜା କରେ । ସଦ୍ୟସ୍ନାତା । ସର୍ବାଙ୍ଗ ଶୁକ୍ଳବସ୍ତ୍ର ଦ୍ୱାରା ଆବୃତ । ମୁକୁଳିତ କେଶ । ବାଳସୂର୍ଯ୍ୟବତ୍ କପାଳରେ ସିନ୍ଦୂର ବିନ୍ଦୁ । ହରିଦ୍ରା ରଞ୍ଜିତ କାନ୍ତିବପୁ, ତଳେ ଅଳକ୍ତ ରଞ୍ଜିତ ପଦଯୁଗଳକୁ ଦର୍ଶନକଲେ ମନେହୁଏ ସାକ୍ଷାତ୍ ଲକ୍ଷ୍ମୀ ବିରାଜମାନ । ଅତି ଆଦରର ସହିତ ନିଜ ଅଙ୍ଗରୁ ଏକ ସୁବର୍ଣ୍ଣ ଅଳଙ୍କାର କାଢ଼ିଦେଇ କହେ— 'ସ୍ୱାମୀନ୍ ନିଅନ୍ତୁ, ଏହି ସୁବର୍ଣ୍ଣକୁ ଲଙ୍ଗଳରୂପେ ବ୍ୟବହାର କରି ଭୂମି କର୍ଷଣ କରନ୍ତୁ ଏବଂ ଏହି ଅକ୍ଷୟ ବୀଜକୁ ତହିଁରେ ନିହିତ କରନ୍ତୁ । କୋଟି

କୋଟି ଭୂତମାନଙ୍କର ଜୀବନ ଧାରଣର ପନ୍ଥା ନିର୍ଦ୍ଧାରଣ କରନ୍ତୁ ।
ଚଷା ଲକ୍ଷେ ପୋଷା । ଅର୍ଦ୍ଧାଙ୍ଗିନୀର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ
ଗୃହ ସ୍ୱାମୀ ସେହି ଅକ୍ଷୟ ବୀଜକୁ ପାଛି ବସ୍ତ୍ରଦ୍ୱାରା ଆବୃତ କରି ଏକ
ପବିତ୍ର ପାତ୍ରରେ ସ୍ୱୀୟ ମସ୍ତକରେ ଧାରଣ କରି କ୍ଷେତ୍ର ଉପରେ ଅବତୀର୍ଣ୍ଣ
ହୁଏ । ମହାସମାରୋହରେ ତାକୁ ନୈବେଦ୍ୟ ଅର୍ପଣ କରି ଅମୃତ
ମୁହୂର୍ତ୍ତରେ ବସୁମତୀ କୋଡ଼ରେ ନିକ୍ଷେପ କରେ । ଅତି ପବିତ୍ର ଓ ଗାମ୍ଭୀର୍ଯ୍ୟ
ପୂର୍ଣ୍ଣ ବାତାବରଣ ଭିତରେ ଏହି ମହାନ୍ କର୍ମ ସମ୍ପାଦିତ ହୁଏ ।
ମାତୃ କୋଡ଼ର ଉଷ୍ଣତା ଓ ପର୍ଜନ୍ୟର ଆର୍ଦ୍ରତା ଲାଭକରି ଏହି ଅକ୍ଷୟ
ବୀଜ ହୁଏ ଅଙ୍କୁରିତ । ଆଷାଢ଼ର ପ୍ରଥମ ଦିବସରେ ପୃଥିବୀ ହୁଏ ରଜସ୍ୱଳା ।
ବସୁମତୀସ୍ନାନ ଦିବସରେ ସେ ଶୁଦ୍ଧସ୍ନାନ କରେ । ପରେ ପରେ ଏହି
ଅଙ୍କୁରକୁ ତା'ର ଗର୍ଭରେ ନିଧାନ କରାଯାଏ । ଯେଉଁ ଦିନ ଏକର୍ମ
କରାଯାଏ ସେ ଦିନଟି ହେବିବ ମହାପୋଡ଼ା' ଦିବସ ରୂପେ ପରିଗଣିତ ।
ଚିତାଲାଗି ଅମାବାସ୍ୟା ଦିନ ବସୁମତୀକୁ 'ଚିତୋଉପିଠା' ଖାଇବାକୁ
ଦିଆଯାଏ । ଅଣଲେଉଟା ଚିତୋଉପିଠା' । ଉଦ୍ଦେଶ୍ୟ ଏ ଗର୍ଭପାତ
ନହେଉ । ତାପରେ ଭାଦ୍ର ଶୁକ୍ଳପକ୍ଷରେ 'କଳାମୁରୁଜ' ଦିସେ । ସେଦିନ
ବସୁମତୀକୁ ସୁସ୍ୱାଦୁ ନିର୍ଦ୍ଦୁଆ ଖାଇବାକୁ ଦିଆଯାଏ । ତାପରେ ଆସେ
'ଗର୍ଭାଣା ସଂକ୍ରାନ୍ତି' । 'ଆଗେ ବୁଣୁ ହେଛେ ବୁଣୁ ଗର୍ଭାଣାକୁ ଝୁଣୁ ଝୁଣୁ'
ଗର୍ଭବତୀ ଯୁବତୀ ସଦୃଶ ଧାନ୍ୟବୃକ୍ଷ ସବୁ ସେତେବେଳେ ଅତି ମନୋରମ
ଦିଶନ୍ତି ! ଗର୍ଭବତୀ ବଧୂକୁ ଦର୍ଶନ କରି ଭାବି ସନ୍ତାନ କାମନା କରି
ପରିବାରର ସମସ୍ତ ଯେପରି ଆନନ୍ଦରେ ବିଭୋର ହୁଅନ୍ତି, ଗର୍ଭାଣା-
ବେଳକୁ ଏହି ଧାନ୍ୟବୃକ୍ଷ ଗୁଡ଼ିକ ଦର୍ଶନ କରି ସମସ୍ତେ ସେହିପରି
କୁତୂହଳ ଉଠନ୍ତି । କୃଷକର ସେ ଆନନ୍ଦର ତୁଳନା ନଥାଏ । କୁମାର
ପୂର୍ଣ୍ଣିମା ଏହି ଗର୍ଭାଣାର ସମସାମୟିକ । ପୂର୍ଣ୍ଣଜ୍ୟୋସ୍ନାର ଆଲୋକରେ
ସେ ଧାନ୍ୟବୃକ୍ଷ ଗୁଡ଼ିକର ମସ୍ତକ ଶୃଙ୍ଖଳା ଦର୍ଶନ କରି ଆତ୍ମବିସ୍ମୃତ ହୁଏ ।
ଗର୍ଭବତୀ ବଧୂକୁ ଆନନ୍ଦରେ 'ସାଦ' ଖୁଆଇଲାଭଳି କୁମାର ପୂର୍ଣ୍ଣିମୀ'
ଦିବସରେ ନାନାବିଧ ପିଷ୍ଟକ ପ୍ରସ୍ତୁତ କରି ଲକ୍ଷ୍ମୀଙ୍କ ନାମରେ ଭୋଗ ଲଗା
ଯାଏ । ଏ ଦିନଟି ଲକ୍ଷ୍ମୀପୂଜା ରୂପେ ବିଦିତ । ମାର୍ଗଶିର ମାସକୁ ସେହି
ଅକ୍ଷୟ ବୀଜ ଶତସହସ୍ର ମଞ୍ଜି ଧାରଣ କରି ଭୂମିଷ୍ଠ ହୁଏ । ବସୁମତୀର
କୋଳ ହସିଉଠେ । ପ୍ରଥମାଷ୍ଟମୀ ଦିବସରେ ସାତକେଣ୍ଡା ଶୁକ୍ଳଧାନ ଓ

ଧାନ୍ୟର ପ୍ରାଣୋଦ୍ଦୀପକ ସାତଗୁଣ୍ଡା ଗୋବରକୁ ପୀଡରେ ସ୍ଥାପନ କରି ହଳଦୀପତ୍ର ଏଣ୍ଡୁରୀ ପିଠା ପୂଜା କରାଯାଏ । ନବଜାତ ଶିଶୁକୁ ସମ୍ବର୍ଦ୍ଧନା କଲାଭଳି ଏ ଦୃଶ୍ୟ ଅତି ମନୋରମ । ଏହା ପରେ ପରେ ସେହି ଭୂଲୁଣ୍ଠିତ ସନ୍ତାନକୁ ଅତି ଆନନ୍ଦରେ ମସ୍ତକରେ ବହନକରି କୃଷକ ଗୃହକୁ ବହିଆଣେ । ଦିଏ ତା'ର ପ୍ରିୟତମା ହସ୍ତରେ । ପତ୍ନୀ ଏହି କଷ୍ଟଲବ୍ଧ ଧନକୁ ସୁରକ୍ଷାପାଇଁ ପରିଚ୍ଛନ୍ନ କରି ସାଇତି ରଖେ । ପୂଜାର ଆୟୋଜନ କରେ । ମାର୍ଗଶିର ମାସଟି ଏଣୁ କର୍ମ ମୁଖର ।

ଶୁକ୍ଳପକ୍ଷ ମାର୍ଗଶିର ଗୁରୁବାର । ଲକ୍ଷ୍ମୀଠାକୁରାଣୀଙ୍କ ପୂଜାପାଇଁ ଆଜି ଘରେ ଘରେ ଆୟୋଜନ । ଆଗୃଣ୍ଡାଳ ବ୍ରାହ୍ମଣ ଆଜି ସମସ୍ତେ ଲକ୍ଷ୍ମୀଙ୍କ ପୂଜାରେ ବ୍ୟସ୍ତ । ସମସ୍ତଙ୍କ ମୁହଁରେ ସନ୍ତୋଷର ଚିହ୍ନ । ମାର୍ଗଶିର ମାସ—କାହାର ଘରେ ଅନ୍ନ ଚିନ୍ତା ନାହିଁ । କୁଣ୍ଡର ହାଣ୍ଡିରେ ପେଜ । ଘର ବାହାରି—ଗୁରିଆଡେ ଅଜ ଧାନ ବନ୍ତ ହୋଇ ପଡୁଛି । ଯୁଆଡ଼େ ଦେଖ ସବୁଠି ଲକ୍ଷ୍ମୀଙ୍କର ଆବିର୍ଭାବ । ଗୁରୁବାର ଗୁଆ, ମାଣ, ଧାନବେଣ୍ଟି ବସିବ । ଖଳାରେ ମେର୍ଡ଼ି ପଡ଼ିବ । ଘର ବାହାରେ ଗୁରିଆଡେ କାନ୍ଥବାଡ଼ରେ ଝୋଟି ପଡ଼ିବ । ମୂଜା ପିଣ୍ଡିରେ ଲକ୍ଷ୍ମୀ ବସିବେ । ଘରେ ଘରେ ଆଶୀର୍ବାଦର ଅମୃତଧାର ବରଷି ଦେବେ । ସାରାବର୍ଷଟି ଚଳିବା ପାଇଁ ଯାହାର ଯାହା ଲୋଡ଼ା ଏହି ମାସରେ ଲକ୍ଷ୍ମୀ ଠାକୁରାଣୀଙ୍କଠୁଁ ସମସ୍ତେ ମାଗି ରଖିବେ । ବରଷର ବାରମାସ ଭିତରେ ଏହି ମାସଟି ସାର ଅଗ୍ରହାୟଣ ।

ଏହି ମାସର ପରିବେଶରେ ସ୍ତବଗାନ କରି ଭକ୍ତ କୁଳ ମାଆ ଲକ୍ଷ୍ମୀଙ୍କୁ ସ୍ମରଣ କରୁଛନ୍ତି :—

ଯାଭ୍ୟାଂ ତ୍ରୈଵୟଖ୍ୟାତାଭ୍ୟାଂ କରିକୁଳକଲଙ୍କଂ ମଣ୍ଡିପୂନ ପାଣ୍ଡିରେ
କ୍ଷୋଭ୍ଛନ୍ନଶୀର୍ଷେ କଳ୍ପସୃତି ଭୂବେତ୍ ଭୂପତି ଭୂଵଭୂଦେନ ।
ଯାନାଗତେନ୍ୟୋଽପି ନନୁସ୍ରବ ନିଶତ ବପୁ ସପ୍ତି ଭାଗ୍ୟ ପିତଷ୍ଣୁ
ସାଟେବ୍ୟଭବ୍ୟାପୂନ ବ୍ୟମ୍ବୁଜ ମଧୁର ରୁଚଲୋଚନେ ତେଽବଧିଜାପ୍ସ ।



ଗଣେଶ ବଜାର ମହାଲକ୍ଷ୍ମୀ ପ୍ରତିମା - ୧୯୮୬



ଗଣେଶ ବଜାର ତୋରଣ–୧୯୮୬

# ସୂଚନା

ଧର୍ମାର୍ଥ କାମ ମୋକ୍ଷାଣାମୁପଦେଶ ସମନ୍ୱିତମ୍
ପୂର୍ବବୃତ୍ତ କଥା ଯୁକ୍ତମିତିହାସଂ ପ୍ରଚକ୍ଷତେ ।

ଢେଙ୍କାନାଳ ମହାଲକ୍ଷ୍ମୀ ପୂଜା ଧର୍ମ, ଅର୍ଥ, କାମ, ମୋକ୍ଷାଦି ଚତୁର୍ବର୍ଗ ଫଳ ଲାଭପାଇଁ କରା ଯାଉଥିବା ସତ୍ୟ ହୋଇଲେ ହେଁ ସପ୍ତାହ ସପ୍ତାହ ବ୍ୟାପୀ ବର୍ଣ୍ଣାଢ୍ୟ ଯାହାର ଅନ୍ତରାଳରେ ସଂଘଟିତ ଘଟଣାବଳୀ ଦ୍ୱାରା ଏହି ସହରର ଜନ ଜୀବନ ପ୍ରଭାବିତ । ଫଳତଃ ଢେଙ୍କାନାଳର ସାମାଜିକ ଅର୍ଥନୈତିକ, ରାଜନୈତିକ ମୂଲ୍ୟବୋଧ ସୁଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି ନିୟନ୍ତ୍ରିତ । ଏ ସବୁର ଇତିହାସ ନଥିଲା — ପ୍ରସ୍ତୁତ ସ୍ମରଣିକାରେ ଶ୍ରୀଯୁକ୍ତ ଭୂତିଆ ଢେଙ୍କାନାଳ "ମହାଲକ୍ଷ୍ମୀ ପୂଜା" ପ୍ରବନ୍ଧକୁ ବହୁଶ୍ରମ ଓ ଯତ୍ନରେ ରଚିତ କରିଥିବା ସତ୍ୟ କିନ୍ତୁ ତାଙ୍କ ଅଜ୍ଞାତସାରରେ କିଛି ତ୍ରୁଟି ବିଚ୍ୟୁତି ଥାଇପାରେ, ଯଦି ଆମର ସୁହୃଦ ପାଠକ କେହି ଏ ଦିଗରେ ସଂଶୋଧନ ଯୋଗ୍ୟତ୍ରୁଟି, ଲିଖିତ ଭାବେ ଦର୍ଶାନ୍ତି, ତେବେ ସେ ସବୁକୁ ସାଦରେ ବିଚାର କରାଯାଇ ଯୁକ୍ତି ଯୁକ୍ତତା ଗ୍ରହଣ ପୂର୍ବକ ପରବର୍ତ୍ତୀ ସଂକଳନରେ ଉକ୍ତ ଭ୍ରମ ସଂଶୋଧନର ପଦକ୍ଷେପ ନିଆଯିବ ।। **ସଂପାଦକ** ।।

# ଢେଙ୍କାନାଳ-ମହାଲକ୍ଷ୍ମୀ-ପୂଜା

ଶ୍ରୀ ବଟେଶ୍ୱର ଭୂୟାଁ

"ନମସ୍ତେ କମଳା ମାଗୋ ସାଗର ଦୁଲଣୀ,
ନମସ୍ତେ ନମସ୍ତେ ଲକ୍ଷ୍ମୀ ବସ୍ତୁଙ୍କ ଘରଣୀ ।
ନମସ୍ତେ କମଳାଳୟା, ଅଷ୍ଟ ଦସ୍ତାବନ୍ତି,
ସ୍ଥାବର ଜଙ୍ଗମ ଜୀବ ଆଦ୍ୟ ପାଳୁ ନିତି ॥

ଓଡ଼ିଶା ଏକ ଦେବଦେବୀ ପ୍ରଧାନ ଦେଶ ରୂପେ ପରିଚିତ । ସର୍ବୋପରି ବାର ମାସରେ ତେର ପର୍ବ, ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ର କରି ଏ ଦେଶରେ ଗଢ଼ି ଉଠିଅଛି । ଏହି ପର୍ବ ପର୍ବାଣି କୌଣସି ନିର୍ଦ୍ଦିଷ୍ଟ ଲୋକ ଗୋଷ୍ଠୀର ଏକଚାଟିଆ ନୁହେଁ, ଏହା ସମଗ୍ର ଜନସମାଜର । ଏହି ପର୍ବପର୍ବାଣି ଆମ ସାମାଜିକ ଓ ସାଂସ୍କୃତିକ ଜୀବନର ମହନୀୟ ଐତିହ୍ୟର ସ୍ମାରକୀ । ଏହା ମାଧ୍ୟମରେ ଲୋକ ରୀତି ଓ ସାମାଜିକ ଜୀବନର ସ୍ପର୍ଶ ମିଳିଥାଏ । ପର୍ବପର୍ବାଣି ଏକ ପକ୍ଷରେ ବ୍ୟକ୍ତି ଜୀବନକୁ ଛନ୍ଦମୟ, ନୀତିମୟ ଶୃଙ୍ଖଳମୟ ଓ ଆଗ୍ରହଶୀଳ କରୁଥିବା ବେଳେ ଅନ୍ୟ ଦିଗରେ ସାମଗ୍ରୀକ ଜୀବନର ବୈଚିତ୍ର୍ୟ ସ୍ମରଣ କରାଇ ଦେଇଥାଏ । ଏହାର ମାଧ୍ୟମରେ ଜୀବନର ଚିନ୍ତା ପ୍ରତିଫଳିତ ହେବା ସଙ୍ଗେ ସଙ୍ଗେ ଏହା ମହାନ୍ ଐତିହ୍ୟର ପରିଚାୟକ ରୂପେ ଗଣାଯାଇ-ଥାଏ । ଆଧ୍ୟାତ୍ମିକ ଓ ସାଂସ୍କୃତିକ ପରମ୍ପରା ନେଇ ପବିତ୍ର ପରିବେଶରେ ପର୍ବପର୍ବାଣି ପାଳନର ପାରମ୍ପରିକ ରୀତି ଓ ନୀତି ।

ପ୍ରତ୍ୟେକ ପର୍ବପର୍ବାଣିର ପ୍ରାଚୀନତା ମୂଳରେ ପୌରାଣିକତା ଯେପରି ଚମତ୍କାରପ୍ରଦ ତଦ୍ରୂପ ତାତ୍ପର୍ଯ୍ୟପୂର୍ଣ୍ଣ । ଉକ୍ତ ବ୍ରତର ଧାର୍ମିକ ମହତ୍ତ୍ୱ ଓ ପୌରାଣିକ ସତ୍ୟ ଯାହା ହେଉନା କାହିଁକି, ଆନନ୍ଦ ଉପଭୋଗ ଏହାର ଅନ୍ତର୍ନିହିତ ଉଦ୍ଦେଶ୍ୟ । ଦୈନନ୍ଦିନ ଜୀବନର ଝଞ୍ଜାଳରୁ ବ୍ୟକ୍ତି ଓ ତାର ପରିବାର ଏହି ଦିନ ମାନଙ୍କରେ ବାହାରି ଯାଇ ମିଳିତ ହୁଏ ଏକ ଅଖଣ୍ଡ ଭାବଧାରା ସହ । ସେଥିରୁ ସେ ପାଏ ନୂତନ ଜୀବନ ଧାରଣର ପ୍ରେରଣା ଓ ସାମାଜିକ ମୂଲ୍ୟ ବୋଧର ଦିଗ୍‌ଦର୍ଶନ ।

ଓଡ଼ିଶାରେ ପ୍ରଚଳିତ ବହୁ ପର୍ବପର୍ବାଣି ମଧ୍ୟରେ ମହାଲକ୍ଷ୍ମୀ ପୂଜା ବିଶେଷ ସ୍ଥାନର ଅଧିକାରୀ । ମହାଲକ୍ଷ୍ମୀଙ୍କର ପୂଜା ମାନଙ୍କ ମଧ୍ୟରେ—

(୧) ଭାଦ୍ର ଶୁକ୍ଳପକ୍ଷ ଅଷ୍ଟମୀ ଠାରୁ ଆଶ୍ୱିନ କୃଷ୍ଣ ମାସ ପର୍ଯ୍ୟନ୍ତ ମହାଲକ୍ଷ୍ମୀ ବ୍ରତ ।

(୨) ଶୁକ୍ଳ ପକ୍ଷ ଦଶମୀ ତିଥି ଦିନ ଗୁରୁବାର ହେଲେ ସୁଦଶା ବ୍ରତରେ ଲକ୍ଷ୍ମୀପୂଜା ।

(୩) ମାର୍ଗଶୀର ମାସର ପ୍ରତ୍ୟେକ ଗୁରୁବାର ଦିନ ମାଣବସା ଗୁରୁବାର ପୂଜା ଉପଲକ୍ଷେ ଲକ୍ଷ୍ମୀପୂଜା ।

(୪) କାର୍ତ୍ତିକ ମାସ ଦୀପାବଳି ଅମାବାସ୍ୟା ତିଥିରେ ଦୈତ୍ୟରାଜ ବଳି ଦ୍ୱାରା ବନ୍ଦୀ ଅବସ୍ଥାରୁ ମହାଲକ୍ଷ୍ମୀ ଦେବତା ମାନଙ୍କ ସହ ମୁକ୍ତ ହୋଇଥିବାରୁ ଲକ୍ଷ୍ମୀ ଦେବୀଙ୍କର ମୁକ୍ତି ଦିବସ ଉପଲକ୍ଷେ ମହାଲକ୍ଷ୍ମୀ ପୂଜା ।

(୫) କୁମାର ପୂର୍ଣ୍ଣିମାକୁ ଲକ୍ଷ୍ମୀ ଠାକୁରାଣୀଙ୍କର ଜନ୍ମ ଉପଲକ୍ଷେ ଲକ୍ଷ୍ମୀ ପୂଜା ।

(୬) ଆଷାଢ ଶୁକ୍ଳ ପଞ୍ଚମୀରେ ହେରାପଞ୍ଚମୀ ବା ଲକ୍ଷ୍ମୀ ବିଜୟୋତ୍ସବ ପାଳନ ଉପଲକ୍ଷେ ଲକ୍ଷ୍ମୀପୂଜା ।

(୭) ବୈଶାଖ ଶୁକ୍ଳ ନବମୀରେ ଲକ୍ଷ୍ମୀଙ୍କ ଉଦ୍ଦେଶ୍ୟରେ ଲକ୍ଷ୍ମୀ ପୂଜା ।

(୮) ଶୁକ୍ଳ ଏକାଦଶୀ ଦିନ ଗୁରୁବାର ହେଲେ ଲକ୍ଷ୍ମୀନାରାୟଣ ପୂଜା ।

(୯) ଶୁକ୍ଳ ପଞ୍ଚମୀ ଦିନ ଗୁରୁବାର ପଡ଼ିଲେ ଗୁରୁପଞ୍ଚମୀ ବ୍ରତ ରୂପେ ମହାଲକ୍ଷ୍ମୀ ପୂଜା ।

(୧୦) ମହାଲକ୍ଷ୍ମୀଙ୍କୁ ନେଇ ଧାନମାଣିକ ବ୍ରତ ପ୍ରଲୁନ୍ତ ପ୍ରଧାନ ।

ମହାଲକ୍ଷ୍ମୀଙ୍କୁ ନେଇ ଉପରୋକ୍ତ ପର୍ବପର୍ବାଣି ମାନଙ୍କ ମଧ୍ୟରେ କୁମାର ପୂର୍ଣ୍ଣିମା ବିପୁଳ ଉଲ୍ଲାସ ଓ ଉନ୍ମାଦନା ମଧ୍ୟରେ ଆମ ଦେଶର ପୁରପଲ୍ଲୀରେ ପାଳିତ ହୋଇ ଆସୁଅଛି । ଶରତର ଅପୂର୍ବ ଶୋଭା ସମ୍ଭାର, ସବୁଜିମା ମଧ୍ୟରେ ଆଣି ଦେଇଥାଏ ଏହି କୁମାର ପୂର୍ଣ୍ଣିମା ଯୁବ ପ୍ରାଣରେ ନୂତନ ଆଶା ଓ ଉନ୍ମାଦନା । ନିର୍ମଳ ଆକାଶରେ ଅପରୂପା ଚନ୍ଦ୍ରମାକୁ ଦେଖି ସମସ୍ତେ ହୁଅନ୍ତି ଆତ୍ମହରା । ସାଂସାରିକ ଜୀବନରେ ସୁଖ, ସମୃଦ୍ଧି ଓ ସୌଭାଗ୍ୟ ପାଇଁ କୁମାର ଉତ୍ସବର ଆୟୋଜନ ହୁଏ । ମଣିଷ ମନରେ ଧର୍ମ, ସ୍ନେହ, ପ୍ରେମ ସହିତ ପ୍ରାଚୁର୍ଯ୍ୟର ଭାବନା ଜାଗ୍ରତ କରାଇବା ଏହି ପର୍ବର ବୈଶିଷ୍ଟ୍ୟ । ତେଣୁ ସମ୍ପଦ, ଧର୍ମ, ଅର୍ଥ, କାମ, ମୋକ୍ଷ ଆଦି ସୌଭାଗ୍ୟର ପ୍ରତୀକ ଏହି ଦିନ ମହାଲକ୍ଷ୍ମୀଙ୍କୁ ପ୍ରତ୍ୟେକ ହିନ୍ଦୁ ପରିବାର ପୂଜା କରିଥାଏ । କୁମାର ପୂର୍ଣ୍ଣିମା ଦିନ ମହାଲକ୍ଷ୍ମୀ ଗଜ ପାର୍ଶ୍ୱରେ ଆସୀନ ହୁଅନ୍ତି । ସେଥିପାଇଁ ଏହାକୁ ମଧ୍ୟ ଗଜଲକ୍ଷ୍ମୀ ପୂଜା ବୋଲି କୁହାଯାଇଥାଏ । କୁମାର ପୂର୍ଣ୍ଣିମାକୁ କେତେକ କୋଜାଗର ପୂର୍ଣ୍ଣିମା ବୋଲି କହିଥାନ୍ତି । କାରଣ ପୁରାଣ ଅନୁଯାୟୀ ଏହିଦିନ କୁମାର କାର୍ତ୍ତିକେୟ ଜନ୍ମଲାଭ କରି ସମସ୍ତଙ୍କ ମନରେ ଆନନ୍ଦ ଭରି ଦେଇଥିଲେ । ଶିବପୁତ୍ର କାର୍ତ୍ତିକଙ୍କର ଜନ୍ମ ଦିବସକୁ ଆଧାର କରି କୁମାରପୂର୍ଣ୍ଣିମା ବ୍ରତ ପାଳିତ ହୋଇଥାଏ । ତେଣୁ ଏହି ଦିବସର ସ୍ମାରକୀଭାବେ ଉଜାଗର ରହି ସମସ୍ତେ ନାନାବିଧ ଖେଳରେ ବିଶେଷତଃ ପଶା ଖେଳରେ ମଜ୍ଜି ରହନ୍ତି । ଏହି କୋଜାଗର ଉତ୍ସବରେ ରାତ୍ରି ଜାଗରଣ ରହିବା ମୂଳରେ ବହୁ ପୌରାଣିକ ଉପାଖ୍ୟାନ ପ୍ରଚଳିତ । କେତେକ ପୁରାଣ ମତରେ ଏହିଦିନ ବରଦାତ୍ରୀ ବେଶରେ ଚନ୍ଦ୍ରଙ୍କ ସଙ୍ଗରେ ଲକ୍ଷ୍ମୀ ଠାକୁରାଣୀ ସମୁଦ୍ର

ଗର୍ଭରୁ ଜାତ ହୋଇଥିଲେ । ଲକ୍ଷ୍ମୀ ଠାକୁରାଣୀ ସାଗର ଗର୍ଭରେ ବାଲ୍ୟ ଅବସ୍ଥାରେ କପର୍ଦ୍ଦି ବା କଉଡ଼ି ଖେଳ କରୁଥିବାରୁ ଏହା ମହାଲକ୍ଷ୍ମୀ ପୂଜା ବା କପର୍ଦ୍ଦି ପୂଜା ପର୍ବ ନାମରେ ମଧ୍ୟ ନାମିତ । ସେତେବେଳେ କୁମାରୀ ଅବସ୍ଥା ମହାଲକ୍ଷ୍ମୀଙ୍କର ଥିବାରୁ ଏହି ଆଶ୍ୱିନ ପୂର୍ଣ୍ଣିମାକୁ କୁଆଁର ପୁନେଇଁ ବୋଲି କୁହାଯିବାର କିମ୍ବଦନ୍ତୀ ଅଛି ।

ବହୁ ଶତାବ୍ଦୀରୁ ଉତ୍କଳରେ ମହାଲକ୍ଷ୍ମୀ ପୂଜା ସର୍ବତ୍ର ପାଳିତ ହୋଇ ଆସୁଥିବାର ପ୍ରତ୍ନତତ୍ତ୍ୱବିତ୍ ମାନେ ମତବ୍ୟକ୍ତ କରନ୍ତି । ଭୁବନେଶ୍ୱରସ୍ଥ ଖଣ୍ଡଗିରି ଗୁମ୍ଫା, ପର୍ଶୁରାମେଶ୍ୱର ମନ୍ଦିରରେ ଖୋଦିତ ଲକ୍ଷ୍ମୀ ମୂର୍ତ୍ତି, ପୁରୀ ଜଗନ୍ନାଥ ମନ୍ଦିରରେ ଥିବା ଲକ୍ଷ୍ମୀ ମନ୍ଦିର, କୋଣାର୍କ ମନ୍ଦିରରେ ଥିବା ଲକ୍ଷ୍ମୀ ମୂର୍ତ୍ତି ଆଦିରୁ ଓଡ଼ିଶାରେ ଲକ୍ଷ୍ମୀ ପୂଜାର ପ୍ରାଚୀନତା, ମହତ୍ତ୍ୱ ଓ ତାତ୍ପର୍ଯ୍ୟ ପ୍ରତିପାଦିତ ହୋଇଥାଏ ।

ମହାଲକ୍ଷ୍ମୀ ସମସ୍ତ ଦେବୀ ଶକ୍ତିର ମୂଳତତ୍ତ୍ୱ ବୋଲି ଧରାଯାଆନ୍ତି । ସେ ବ୍ୟକ୍ତ-ଅବ୍ୟକ୍ତ, ଦୃଶ୍ୟ-ଅଦୃଶ୍ୟର ସ୍ୱରୂପ ବୋଲି କୁହାଯାଏ । ସେ ସଚ୍ଚିଦାନନ୍ଦମୟୀ ଏବଂ ସାକ୍ଷାତ ପରମେଶ୍ୱରୀ । ଭକ୍ତର କଲ୍ୟାଣ ଓ ମନୋବାଞ୍ଛା ପୂରଣ ପାଇଁ ଦିବ୍ୟ, ଚିନ୍ମୟ ଏବଂ ସଗୁଣ ରୂପରେ ସଦାସର୍ବଦା ବିରାଜମାନ କରିଥାନ୍ତି । ସେ କରୁଣାମୟୀ, ମୋକ୍ଷପ୍ରଦାନ-କାରିଣୀ, ସୌଭାଗ୍ୟମୟୀ, ଶ୍ରୀ ପ୍ରଦାୟିନୀ, ବିଶ୍ୱରୂପିଣୀ, ପାଳନକାରିଣୀ ତଥା ସଂହାରକାରିଣୀ ବୋଲି ମଧ୍ୟ ଗୃହୀତ ହୁଅନ୍ତି । ସେ ଭଗବାନ ବିଷ୍ଣୁଙ୍କର ପ୍ରିୟତମା ପତ୍ନୀ । ତାଙ୍କର ଶକ୍ତିର ପ୍ରଭାବରେ ବିଷ୍ଣୁ ଅଦ୍ଭୁତ ଲୀଳାମାନ ପ୍ରଦର୍ଶନ କରନ୍ତି ବୋଲି କୁହାଯାଏ । ସେ ହେଉଛନ୍ତି ଭଗବାନ ବିଷ୍ଣୁଙ୍କର ପରାଶକ୍ତି । ମା ଲକ୍ଷ୍ମୀ ବିଷ୍ଣୁଙ୍କ ସହ ସଂଯୁକ୍ତ ହେଲେ ଭଗବାନ ବିଷ୍ଣୁ ସକ୍ରିୟ ହୋଇ ମାନବ ସମାଜର ଅଶେଷ କଲ୍ୟାଣ ସାଧନ କରନ୍ତି, ଅନ୍ୟଥା ସେ ନିଷ୍କ୍ରିୟ । ମା ଲକ୍ଷ୍ମୀ କରୁଣାମୟୀ, ସ୍ନେହ-ମୟୀ ଓ ମାତୃରୂପିଣୀ । ତେଣୁ ସେ ବନ୍ଦିତା ଓ ପୂଜିତା ।

ମହାଲକ୍ଷ୍ମୀ ପୂଜା ଓଡ଼ିଶାର ମୌଳିକ ପର୍ବ । ଏହା କେବେ ଏବଂ କେଉଁ ପରିସ୍ଥିତିରେ ଢେଙ୍କାନାଳରେ ଆରମ୍ଭ ହୋଇ ସାର୍ବଜନୀନ

ପୂଜାର ଗୌରବ ଲଭକରି ଜନସାଜରରେ ଆଦୃତ ହେଲା କହିବା କଷ୍ଟକର । କାରଣ ଏହାର ସଠିକ ଇତିହାସ କେହି ରଖିନାହାଁନ୍ତି । ବର୍ତ୍ତମାନ ପର୍ଯ୍ୟନ୍ତ ବଞ୍ଚିରହିଥିବା ମାତ୍ର କେଇଜଣ ବୟୋଜ୍ୟେଷ୍ଠ ବ୍ୟକ୍ତି ଯେଉଁମାନେକ ଅଗ୍ରତରେ ମହାଲକ୍ଷ୍ମୀପୂଜା ସହ ସଂପୃକ୍ତ ଥିଲେ ସେମାନଙ୍କ ସ୍ମୃତି ମନ୍ଥନ କରି ଯାହାକିଛି ପ୍ରକାଶ କରନ୍ତି ତହିଁ ଉପରେ ଆସ୍ଥା କଲେ ଜଣାଯାଏ ପ୍ରାୟତଃ ୧୯୨୩ ମସିହା ବେଳକୁ ଏହି ପୂଜା ପ୍ରଥମେ ପାଞ୍ଜିଆ ସାହିର ସ୍ୱର୍ଗୀୟ ବ୍ରଜକିଶୋର ପଟ୍ଟନାୟକଙ୍କ ଦ୍ୱାରା ଢେଙ୍କାନାଳ ଗଡ଼ରେ ଆରମ୍ଭ ହୋଇଥିବାର ଯଥେଷ୍ଟ ସମ୍ଭବପର ବୋଲି ଜ୍ଞାତ ହୁଏ । ତାଙ୍କର ଘନିଷ୍ଠ ସହଯୋଗୀ ବନ୍ଧୁ ବେବର୍ତ୍ତା ସାହିର ସ୍ୱର୍ଗୀୟ ନନ୍ଦକୃଷ୍ଣ ପଟ୍ଟନାୟକ ଏବଂ ଆଉ କେତେକ ଯୁବକ ଏଥିରେ ତାଙ୍କୁ ଏକାନ୍ତ ସହଯୋଗ କରୁଥିଲେ ।

୧୯୨୩ ମସିହା ବେଳକୁ ଢେଙ୍କାନାଳ ଥିଲା ଏକ ଗଡ଼ଜାତ ମୂଳକ ଓ ଏହାର ରାଜା ଥିଲେ ସର୍ବମୟ କର୍ତ୍ତା । ସେତେବେଳେ ଢେଙ୍କାନାଳ ଏକ ବଡ଼ ପଲ୍ଲୀ ଜନବସତି ରୂପେ ଗଣ୍ୟ ହେଉଥିଲା । ଏହାର ନାମ ଥିଲା "ନଜିଗଡ଼" । ଏହା ମୁଖ୍ୟତଃ ତିନି ଭାଗରେ ବିଭକ୍ତ । ଉପରଗଡ଼, ମଝିଗଡ଼, ତଳଗଡ଼ । ବ୍ରଜନାଥ ବଡ଼ଜେନାଙ୍କ ଲିଖିତ "ସମର ତରଙ୍ଗ"ରେ ଏହି ଢେଙ୍କାନାଳ ନଗରର ବର୍ଣ୍ଣନା ଅଛି :—

"ଏ କ୍ଷେତ୍ରର ଉତ୍ତର ଦିଗରେ
ଢେଙ୍କାନାଳ ନାମେ ଅଛି ନଗରେ
ଧାତା କଲା ତା ଯତନେ ନିର୍ମାଣ
ରସା ରସାକନ୍ନ ଶୀରଭୂଷଣ ସେ
କି କହିବା ତାର ହେଳ ଯେ
ସୁଖ ବିନା ଦୁଃଖ କି ରୂପେ ହୁଅଇ
ନ ଯାଣନ୍ତି ତହିଁ ଲୋକ ଯେ ।" । ୩ ।

ଏହାର ସତ୍ୟତା ସେତେବେଳକୁ ଥିଲା କି ନଥିଲା କହିବା କଷ୍ଟକର । କିନ୍ତୁ ୧୮୯୬ ମସିହାରେ ଏହି ନଜିଗଡ଼ ଠାରେ

ଉଚ୍ଚଇଂରାଜୀ ବିଦ୍ୟାଳୟ ସ୍ଥାପନ ସହ ୧୯୧୮ ମସିହାରେ ଏହାର ଗ୍ରୁଣ୍ଡ ଟ୍ରଙ୍କ ୪୨ନମ୍ବର ଜାତୀୟ ରାଜପଥ ସଡ଼କ ଗଡ଼ରେ କଟକରୁ ସମ୍ବଲପୁର ଯାଏ ଯାଇପାରିଥିଲା ଏବଂ ୧୯୨୭ ମସିହାରେ ବି. ଏନ୍. ଆର. କର୍ତ୍ତୃପକ୍ଷ ଠାରୁ ତାଳଚେର ରେଳପଥରେ ରେଳଗାଡ଼ି ଯାତାୟତ କରିବା ଆରମ୍ଭ କରିଥିଲା । ଘଞ୍ଚ ଜଙ୍ଗଲ ପରିପୂର୍ଣ୍ଣ 'ଶସ୍ୟଶ୍ୟାମଳା' ଭରା ଢେଙ୍କାନାଳଗଡ଼ରେ ନଥିଲା ପିଚୁରାସ୍ତା ବା ବିଜୁଳିବତ୍ତି । ଲୋକ ସଂଖ୍ୟା ପ୍ରାୟ ଷୋହଳ ହଜାର ମଧ୍ୟରେ ଥିଲା । ବ୍ରଜନାଥ ବଡ଼ଜେନାଙ୍କ ବର୍ଣ୍ଣିତ "ଅବ୍ର" (ବାଉଁଶ-ବଣ) ନିଶ୍ଚିହ୍ନ ହୋଇଯାଇଥିଲା ଏବଂ "ଜଳୀ" (ଗଡ଼ଖାଇର)ର ଚିହ୍ନ ବିଲୁପ୍ତ ଅବସ୍ଥାକୁ ଆସିଯାଇଥିଲା । କିନ୍ତୁ ଢେଙ୍କାନାଳର ଜନତା ମଧ୍ୟରେ ସାହିତ୍ୟ, ନାଟକ, କଳା, ସଂସ୍କୃତି ପ୍ରତି ଶ୍ରଦ୍ଧା ଓ ଅନୁରାଗ ଭରିରହିଥିଲା । ଧର୍ମ ପର୍ବ ପର୍ବାଣି ସହ ନାଟକର ସମ୍ପର୍କ ସର୍ବଦା ଓତଃପ୍ରୋତ ଭାବେ ଜଡ଼ିତ । କାରଣ ତାହା ଲୋକ ସଂସ୍କୃତି ଓ ଲୋକଧର୍ମର ଆଧାର ସ୍ୱରୂପ । ଢେଙ୍କାନାଳ ଏଥିରୁ ବାଦ୍ ପଡ଼ିନଥିଲା, ସେ ସଂପୁର୍ଣ ଚର୍ଚ୍ଚା ହେଉଥିଲା ସର୍ବଦା ।

କୁମାର ପୂର୍ଣ୍ଣିମା ଦିନ ଚନ୍ଦ୍ର ପୂଜା ଉତ୍କଳର ପୁରପଲ୍ଲୀରେ କୁମାରୀ ମାନଙ୍କର ସେ ସମୟରେ ଏକ ପ୍ରଧାନ ପର୍ବ ଥିଲା । ଏହାଛଡ଼ା ଚନ୍ଦ୍ରଙ୍କୁ କେନ୍ଦ୍ର କରି ଜହ୍ନିଓଷା, ଭାଦ୍ରବ ପୂର୍ଣ୍ଣିମା ଠାରୁ ଆରମ୍ଭ ହୋଇ କୁମାର ପୂର୍ଣ୍ଣିମା ଦିନ ଉଦ୍‌ଯାପିତହେବାର ବିଧି ପାଳିତ ହେଉଥିଲା । ଏହି ଚନ୍ଦ୍ରପୂଜା କୁମାରୀ ପ୍ରାଣରେ ଜୀବନ ପ୍ରାଚୁର୍ଯ୍ୟର ଭାଷା ଓ ଉନ୍ମାଦନା ମାନ ଭରିଦେଉଥିଲା । ଚନ୍ଦ୍ରପରି ସୁନ୍ଦର, ବର କାମ୍ୟ କୁମାର କାର୍ତ୍ତିକଙ୍କ ପରି ସୌର୍ଯ୍ୟ ଓ ବଳବାନ ସୁନ୍ଦର ଜୀବନ ସାଥି ପାଇବାକୁ କୁମାରୀ କନ୍ୟା ଚନ୍ଦ୍ର ଉପାସନା କରେ ବୋଲି କୁହାଯାଏ । 'ଫୁଲ ବଉଳ ବେଣୀ' ସଙ୍ଗୀତ ସାଙ୍ଗକୁ 'ପୁଚଲେ, ଯା'ଯା'-ଭୁ ଧାନ୍ଲେ' ପୁଚି ଖେଳ ମାଧ୍ୟମରେ ପଲ୍ଲୀ ଗୀତର ବେସୁରା ବଟିଣୀ ଗାଁ ଦାଣ୍ଡକୁ ମୁଖରିତ କରି ସେପନ ତୋଳି ଦେଉଥିଲା ସବୁରି ମନରେ ଆନନ୍ଦ ଓ ଓ ଉଲ୍ଲାସ । କୁମାରୀ ମାନଙ୍କର ମନ ଉତଲା ହୋଇ ଉଠୁଥିଲା । ଖେଳର ଶେଷ ନଥିଲା କି ଗୀତର ପରିସମାପ୍ତି ନଥିଲା । ଗୀତ ଗୁଡ଼ିକ ଇଙ୍ଗିତଧର୍ମୀ ଓ ରସବନ୍ତ ହେଉଥିଲା, ଯାହାକି କୁମାରୀ ମାନଙ୍କର ଭାବ

ଜୀବନ ଦର୍ଶନର ସୂଚକ ବୋଲିଉ ଥିଲା । ଏପରି ଏକ ସରସ, ସୁନ୍ଦର, ଆନନ୍ଦ ମୁଖର ପରିବେଶ ମଧ୍ୟରେ ଗନ୍ତ ପାଉଥିଲା ଉଜାଗର ପାଳନ ମାଧ୍ୟମରେ ।

ସ୍ୱର୍ଗୀୟ ବ୍ରଜକିଶୋର ପଟ୍ଟନାୟକ ଥିଲେ ଜଣେ ନାଟକ ପ୍ରେମୀ ଓ କଳାକାର । ସେ ଗଢିପାରୁଥିଲେ ସୁନ୍ଦର ମୃଣ୍ମୟ ମୂର୍ତ୍ତି । ତାଙ୍କର ତୁଳିକରେ ତାହା ହେଉଥିଲା ଜୀବନ୍ତ ଓ ମର୍ମସ୍ପର୍ଶୀ । ସେ ଗଢିଥିଲେ ଏକ "ରାସଲୀଳା" ଦଳ । ସାଧାରଣତଃ କୁମାର ପୂର୍ଣ୍ଣିମାକୁ ସେ ତାଙ୍କର ରାସଲୀଳା ବହୁ ସମୟରେ ପରିବେଷଣ କରୁଥିଲେ । ତାଙ୍କର ଉଦ୍-ଯୋଗରେ ମୃଣ୍ମୟ ମହାଲକ୍ଷ୍ମୀ ମୂର୍ତ୍ତିର ପୂଜା ଆରମ୍ଭ ହୁଏ ପ୍ରାୟ ୧୯୨୩ ମସିହା ବେଳକୁ । ଉପର ଟଉର ହନୁମାନ ମନ୍ଦିର ପ୍ରାଙ୍ଗଣରେ ମହାଲକ୍ଷ୍ମୀଙ୍କର ପୂଜା ଆସ୍ଥାନ ସ୍ଥାପିତ ହୁଏ । ରାସଲୀଳା ସହ ସପ୍ତାହ ବ୍ୟାପୀ ନାଟକ ପରିବେଷଣ କରାଯାଏ । କଳାକାର ହୁଅନ୍ତି ଉପର ଟଉର ବାଳକ ମାନେ । ଏହା ବେଶ୍ ଆଦୃତ ହୁଏ ଜନସମାଜରେ ମହାଲକ୍ଷ୍ମୀ ପୂଜା ସାର୍ବଜନୀନ ପୂଜାର ଗୌରବର ଅଧିକାରୀ ହୋଇଥିଲେ ।

ଉପରଟଉରେ ମହାଲକ୍ଷ୍ମୀ ପୂଜା ହେବାରୁ ପ୍ରାୟ ୧୯୨୪ମସିହା ବେଳକୁ ସ୍ୱର୍ଗତ ବ୍ରଜକିଶୋର ପଟ୍ଟନାୟକଙ୍କର ଘନିଷ୍ଠ ବନ୍ଧୁ ଦେବର୍ଷି ସାହୁର ସ୍ୱର୍ଗତ ଗତିକୃଷ୍ଣ ପଟ୍ଟନାୟକ କୌଣସି କାରଣରୁ ଅସନ୍ତୁଷ୍ଟ ହେବା ଫଳରେ ମଝିଗଡ ଅର୍ଥାତ୍ ବର୍ତ୍ତମାନର ମିନାବଜାର ଅଞ୍ଚଳରେ ମୃଣ୍ମୟ ମହାଲକ୍ଷ୍ମୀ ମୂର୍ତ୍ତିର ପୂଜା ଅତି ଜାଙ୍କଜମକ ଭାବରେ ଆରମ୍ଭ ହୁଏ । ସ୍ୱର୍ଗତ ଗତିକୃଷ୍ଣ ପଟ୍ଟନାୟକ ନିଜେ ଥିଲେ କୁଶଳୀ କଳାକାର । ମୃଣ୍ମୟ ମୂର୍ତ୍ତି ଗଠନରେ ସିଦ୍ଧ ହସ୍ତ । ନାଟକ ପ୍ରତି ତାଙ୍କର ଥିଲା ଅଗାଧ ଶ୍ରଦ୍ଧା ପ୍ରେରଣାରେ ବହୁ ଯୁବକ ଆଗେଇ ଆସିଲେ ଲକ୍ଷ୍ମୀ ଠାକୁରାଣୀଙ୍କୁ ସାର୍ବଜନୀନ ଭାବରେ ପୂଜା କରିବାକୁ । ମଝିଗଡ଼ରେ ପୂଜା ମଣ୍ଡପ ହେଲା, ମୃଣ୍ମୟ ମୂର୍ତ୍ତି ତିଆରି ହେଲା, ନାଟକ ମଧ୍ୟ ପରିବେଷଣ ହେଲା । ପୂଜା ଆରାଧନାହୋଇ ଉଠିଲା ରସବନ୍ତ, ଜୀବନ୍ତ ଓ ପ୍ରାଣବନ୍ତ ।

ଏହ୍ଵପରି ଭାବରେ ଢେଙ୍କାନାଳର ଉପରଗଡ ଓ ମହିଗଡ ଦୁଇ ଜାଗାରେ ବେଶ ଜାକଜମକ ସହକାରେ ସମ୍ବାଦ ବ୍ୟାପି ମହାଲକ୍ଷ୍ମୀଙ୍କର ପୂଜା ଆରାଧନା ଲାଗି ରହୁଥିଲା । ପ୍ରତ୍ୟେକ ବର୍ଷ ବାସୀନ୍ଦା ମାନଙ୍କର ସାହାଯ୍ୟ ସହଯୋଗ, ଦାନ ଅକୁଣ୍ଠ ଚିତ୍ତରେ ଉଦ୍ୟୋକ୍ତା ମାନେ ଲାଭକରି ପୂଜା ଆରାଧନା, ନାଟ ତାମାସାକୁ ଅଧିକ ସୁନ୍ଦର ଓ ଉପଯୋଗୀ କରି ଜନମାନସ ରଞ୍ଜନ କରାଇ ପାରୁଥିଲେ । ସମ୍ବାଦ-ବ୍ୟାପି ପୂଜା ପରେ ଆଡ଼ମ୍ବର ପୂର୍ଣ୍ଣ ଶୋଭାଯାତ୍ରା ମଧ୍ୟରେ ଠାକୁ-ରାଣୀମାନଙ୍କର ମୂର୍ତ୍ତି ବାଡ଼ନାଳ ଘାଟରେ ବିସର୍ଜନ ହେଉଥିଲା । ପଞ୍ଚୁଲାଇଟି ଜେ-ଲାଇଟି ଧରି ବଡ଼ ବଡ଼ ନିଶାଣ ଢୋଲ, ମାଦଳ ବଜାଇ, ବାଣ ଫୁଟାଇ, ମୂର୍ତ୍ତି ମାନଙ୍କୁ ବିସର୍ଜନ ପାଇଁ ନିଆଯାଉଥିଲା । ନଜରଗଡ଼ ଗହଳ ଚହଳରେ ପୂରି ଉଠୁଥିଲା । ଶୋଭାଯାତ୍ରାକୁ ଉପଭୋଗ କରୁ ଥିଲେ ନଜରଗଡ଼ର ବାସୀନ୍ଦା ମାନଙ୍କ ସହ ମଫସଲରୁ ଆସୁଥିବା-ଶହ ଶହ ଦର୍ଶକ ବୃନ୍ଦ ।

୧୯୩୦ ମସିହା ବା ୧୯୩୧ ମସିହା ବେଳକୁ ନାନା କାରଣରୁ ଉଭୟ ପେଣ୍ଡର ଉଦ୍ୟୋକ୍ତା ମାନଙ୍କ ମଧ୍ୟରେ ଆନ୍ତରିକତା ଓ ପ୍ରଚେଷ୍ଟାରେ ଶିଥିଳତା ଦେଖାଦେଲା । ଫଳରେ ଜାକଜମକ ସହ ମହାଲକ୍ଷ୍ମୀ ପୂଜାର ଅବସାନ ଘଟିଲା । କୌଣସି ଆସ୍ଥାନରେ ପୂଜାଆରମ୍ଭ ହେଲେ ବାରବର୍ଷ ଯାଏ ପୂଜା କରିବାର ବାଧ୍ୟ ଥିବା ଦୃଷ୍ଟିରୁ ୧୯୩୪ ବା ୧୯୩୫ ପର୍ଯ୍ୟନ୍ତ ଉଭୟ ପୂଜାପୀଠରେ ତାହା ଯେନତେନ ପ୍ରକାରେ କରାଯାଇ ପୂଜା ଉଦ୍ୟାପନ କରି ଦିଆଯାଇଥିବାର କୁହାଯାଏ ।

୧୯୪୦ ମସିହାରେ ଢେଙ୍କାନାଳର ପୂର୍ବତନ ଦେଓ୍ୱାନଙ୍କ ଦରବାରର ସ୍ୱଗତ ସଚ୍ଚିଦାନନ୍ଦ ସିଂହଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟାରେ ସେତେବେଳର ସାଆନ୍ତସାଇ ଅର୍ଥାତ୍ ବର୍ତ୍ତମାନର ଜହରଚଉକ ଅଞ୍ଚଳରେ ତାଙ୍କ ଘର ଚଉପାଢ଼ୀରେ ଲକ୍ଷ୍ମୀ ପୂଜା ଆରମ୍ଭ ହେଲା । ପ୍ରଥମେ ଘଟ ବସାଇ ପୂଜା ଆରମ୍ଭ ହୋଇ ପରେ ୧୯୪୩ ମସିହା ବେଳକୁ ଉକ୍ତ ପୂଜାପୀଠରେ ମୃଣ୍ମୟ ମୂର୍ତ୍ତି ସ୍ଥାପିତ କାରଗର

ଲମ୍ବୋଦର ନାୟକଙ୍କ ଦ୍ୱାରା ଗଠିତ ହୋଇ ପୂଜା କରାଗଲା । ୧୯୫୫ ମସିହାରେ ଶଚି ବାବୁ ସ୍ୱର୍ଗାରୋହଣ କରିବାରୁ ପୁଣି ଘଟସ୍ଥାଇ ଲକ୍ଷ୍ମୀପୂଜା ବିଧିରକ୍ଷା କରାଗଲା ବୋଲି କୁହାଯାଏ ।

୧୯୪୧ ମସିହାରେ ମଚ୍ଛିଗଡ଼ ଅର୍ଥାତ୍ ବର୍ତ୍ତମାନର ମିନାବଜାର ଅଞ୍ଚଳରେ ମୃଣ୍ମୟ ମୂର୍ତ୍ତିପୂଜା ଆରମ୍ଭ ହେଲା । ସେତେବେଳର ସେ ଅଞ୍ଚଳର ଯୁବକ ଶ୍ରୀ ନଟବର ଦେବତା, ଶ୍ରୀ ବଂଶୀଧର ସାହୁ, ସ୍ୱର୍ଗତ ସନାତନ ମହାରଣା, ସ୍ୱର୍ଗତ ମାଧବ ବେହେରା ପ୍ରଭୃତିଙ୍କର ସହଯୋଗ ଓ ଉଦ୍ୟୋଗରେ ଉକ୍ତ ପୂଜା ପୁଣିଥରେ ଆରମ୍ଭ ହେଲା । ଉକ୍ତ ମୃଣ୍ମୟ ମୂର୍ତ୍ତିକୁ ସ୍ୱର୍ଗୀୟ ଗତିକୃଷ୍ଣ ପଟ୍ଟନାୟକ କରିଥିଲେ ବୋଲି ଜଣାଯାଏ । ପୂଜାର ମୁଖ୍ୟ ତତ୍ତ୍ୱାବଧାରକ ଥିଲେ ସେ ଅଞ୍ଚଳର ବିଶିଷ୍ଟ ବ୍ୟବସାୟୀ ମହାପାତ୍ର ବାଞ୍ଛାନିଧି ସାହୁ । ସେତେବେଳେ ଉକ୍ତ ପୂଜା ପୀଠରେ ପ୍ରାୟ ଏକ ସପ୍ତାହ ବ୍ୟାପୀ ପୂଜା ହୋଇ ବେଶ୍ ଜାକଜମକରେ ଶୋଭାଯାତ୍ରାରେ ଠାକୁରାଣୀଙ୍କୁ ବିସର୍ଜନ ପାଇଁ ନିଆଯାଉଥିଲା । ୧୯୪୫ ଯାଏ ଏକଲା ଭାବରେ ଉକ୍ତ ଠାକୁରାଣୀଙ୍କର ବିସର୍ଜନ ଉତ୍ସବ ପାଳିତ ହେଉଥିଲା ।

୧୯୪୬ରେ ଶଚି ବାବୁଙ୍କ ଚଉପାଢ଼ୀରେ ହେଉଥିବା ମହାଲକ୍ଷ୍ମୀ ପୂଜାକୁ ସାର୍ବଜନୀନ ଭାବେ ସାଆନ୍ତସାହି ଅଞ୍ଚଳର ବାସିନ୍ଦା ମାନେ ପ୍ରଥମଥର ପାଇଁ ପାଳନ କରିବାର କଳ୍ପନା କରି ସେ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତି ସ୍ୱର୍ଗୀୟ ନାରାୟଣ ଚନ୍ଦ୍ର ଦାସ ଜଗଜୀବନ, ସ୍ୱର୍ଗୀୟ ଭବଗ୍ରାହୀ ଦାସ, ସ୍ୱର୍ଗୀୟ ଲିଙ୍ଗରାଜ ଦାସ ପ୍ରଭୃତି ସ୍ୱର୍ଗୀୟ ଶଚି ବାବୁଙ୍କ ସହଧର୍ମିଣୀଙ୍କ ସାହାଯ୍ୟରେ ମୃଣ୍ମୟ ଲକ୍ଷ୍ମୀ ମୂର୍ତ୍ତିର ପୂଜା ବେଶ୍ ଜାକଜମକରେ କଲେ ଓ ଏହା ସାଇବାସୀଙ୍କ ଦ୍ୱାରା ସେହି ଦିନଠୁ ଆଦୃତ ହୋଇ ଆସୁଅଛି ।

ମହାଲକ୍ଷ୍ମୀ ପୂଜା ପ୍ରତି ଲୋକମାନଙ୍କର ଶ୍ରଦ୍ଧା ଓ ସହଯୋଗ ବଢ଼ିବାରୁ ଉଭୟ ପୂଜାପ୍ରତିଷ୍ଠାନର କର୍ମକର୍ତ୍ତା ମାନଙ୍କର ମିଳିତ ସହଯୋଗରେ ୧୯୪୭ ମସିହାରେ ପ୍ରଥମଥର ପାଇଁ ଦୁଇଟିଯାକ ମେଢ଼ାର ମିଳିତ ଭସାଣି ଶୋଭାଯାତ୍ରା ରାତ୍ରକାଳରେ ସମାପିତ

ହୋଇଥିଲା । ଢୋଲ, ବଇଁକାଠ, ନଗାରା, ମାଦଳ, ତେଲ ଲାଗିଛି, ଟଙ୍ଗ ଲାଗିଛି, ବନାଟି ଧରି ଦୁଇଟିଯାକ ମେଢ଼ ଭସାଣି ଶୋଭାଯାତ୍ରା ଆରମ୍ଭ କଲେ । ସେ ସମୟକୁ ରଜା ଓ ରାଜପ୍ରାସାଦ କ୍ଷମତାର କେନ୍ଦ୍ରସ୍ଥଳୀ ଥିବା ଦୃଷ୍ଟିରୁ ସମସ୍ତ ଶୋଭାଯାତ୍ରା ରାଜନବରକୁ ଢେଙ୍କା-ନାଳର ଇଷ୍ଟଦେବତା ସିଦ୍ଧ ବଳରାମଙ୍କ ମନ୍ଦିର ପ୍ରଦକ୍ଷିଣ କରି ଯିବାର ଏକ ପରମ୍ପରା ଥିଲା । ଏହି ପରମ୍ପରା ରକ୍ଷାକରି ମହିଷଗଡ଼ (ମିନା-ବଜାର) ମେଢ଼ ପ୍ରଥମେ ଓ ଶଙ୍କବାବୁ (ଜବାହରଚୌକ) ମେଢ଼ ଦ୍ୱିତୀୟ ଭାବେ ଆଗଚଳ ହୋଇ ଶୋଭାଯାତ୍ରାରେ ଅଂଶଗ୍ରହଣ କଲେ । ମିଳିତ ଶୋଭାଯାତ୍ରାରେ ମେଢ଼ର କ୍ରମିକ ନମ୍ବର ଭିତ୍ତିରେ ପରମ୍ପରା ସେହିଦିନ ଠାରୁ ସୃଷ୍ଟି ହେଲା । ସପ୍ତାହ ବ୍ୟାପୀ ମହାଲକ୍ଷ୍ମୀ ପୂଜା ସାଙ୍ଗକୁ ମେଢ଼ ଶୋଭାଯାତ୍ରା ଲୋକମାନଙ୍କ ଦ୍ୱାରା ଦିନକୁ ଦିନ ବେଶି ଆଦୃତ ହେଲା ଓ ଏହାର ଜନପ୍ରିୟତା ବଢ଼ିଲା । ଫଳରେ ପୂଜା ସହିତ ସଂପୃକ୍ତ ତତ୍ତ୍ୱାବଧାରକ ମାନଙ୍କର ଗୌରବ ଓ ପ୍ରତିଷ୍ଠା ସାହିମାନଙ୍କରେ ବଢ଼ିଲା । ଏହା ସଙ୍ଗେ ପୂଜା ହେଉଥିବା ସାହିମାନଙ୍କର ବ୍ୟବସାୟୀ ମାନଙ୍କର ବ୍ୟବସାୟର ପ୍ରସାର ମଧ୍ୟ ଘଟିଲା । ତେଣୁ ବିଭିନ୍ନ ସାହିର ବ୍ୟବସାୟୀ ଗୋଷ୍ଠୀ ତଥା ମୁଖିଆ ମାନେ ନିଜର ବ୍ୟବସାୟ ଓ ପ୍ରତିଷ୍ଠା ବଜାୟ ରଖିବା ପାଇଁ ସେମାନଙ୍କ ସାହିରେ ଗୋଟିଏ ଗୋଟିଏ ମହାଲକ୍ଷ୍ମୀ ପୂଜା ଅନୁଷ୍ଠାନ ଗଢ଼ିବାର ପରିକଳ୍ପନା କଲେ ।

୧୯୪୮ ରେ ପ୍ରଥମଥର ପାଇଁ ଲକ୍ଷ୍ମୀବଜାର ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନରେ ପୂଜା ଆରମ୍ଭ ହେଲା । ସ୍ୱର୍ଗୀୟ ରାମଜୀ ଜଗନ୍ନାଥନ ଓ ଶ୍ରୀ ଅନାଦି ଦୋରା, ଶ୍ରୀ ବୈରାଗୀ ଚରଣ ସାମଲ ପ୍ରଭୃତିଙ୍କ ପ୍ରତ୍ୟକ୍ଷ ସହଯୋଗରେ ପୂଜା ଆରମ୍ଭ ହେଲା । ବଜାରର ନାମ ସେତେବେଳେ "ଜୁବୁଲି ମାର୍କେଟ" ଥିଲା ଲକ୍ଷ୍ମୀବଜାର ହୋଇନଥିଲା । ଉକ୍ତ ପୂଜା ଅନୁଷ୍ଠାନକୁ ଲୋକେ ରାମଜୀ ବାବୁ ପୂଜା ଅନୁଷ୍ଠାନ ବୋଲି କହୁଥିଲେ ।

୧୯୪୮ ଜାନୁୟାରୀ ପହିଲାରେ ଢେଙ୍କାନାଳ ସମେତ ଗଡ଼ଜାତ ମାନେ ଓଡ଼ିଶା ପ୍ରଦେଶର ଶାସନାଧୀନ ହୋଇ ଅଖଣ୍ଡ ଭାରତର ଅଙ୍ଗ ହୋଇଗଲେ । ରାଜା ଶାସନ ଲୋପ ପାଇଥିଲା । ତଥାପି ରାଜା ଏବଂ

ରାଜନଗର ଜନସାଧାରଣଙ୍କ ସହ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ଥିବାରୁ ଏବଂ ମେଢର ଅଧିକାଂଶ କର୍ମକର୍ତ୍ତା ମାନେ ରାଜପରିବାର ପ୍ରତି ଅନୁଗତ ଥିବା ଦୃଷ୍ଟିରୁ ମିଳିତ ଶୋଭାଯାତ୍ରା ପୂର୍ବ ପରମ୍ପରା ରକ୍ଷାକରି ବଳଦେବ ମନ୍ଦିର ଦେଇ ରାଜନଗରକୁ ଯାଇ "କାଠଶଙ୍ଖ" ଠାରେ ମୂର୍ତ୍ତି ମାନଙ୍କୁ ବିସର୍ଜନ କରୁଥିଲେ । ରାମଜୀ ବାବୁଙ୍କ ମେଢ଼ର କ୍ରମିକ ନଂ ୩ ଥିଲା ।

୧୯୭୪ ମସିହାରେ ଉପରଗଡ଼ ମେଢ ନାମରେ ସ୍ୱର୍ଗତ ଶ୍ୟାମ ସୁନ୍ଦର ସାହୁ, ସ୍ୱର୍ଗତ ଅଭୟ ଶଙ୍କର ରାୟ, ଶ୍ରୀ ଧର୍ମାନନ୍ଦ ସାହୁ, ସ୍ୱର୍ଗତ ରଘୁନାଥ ମହାରଣା, ଶ୍ରୀ ଦଣ୍ଡପାଣି ଦୋରା, ସ୍ୱର୍ଗତ ବାବାଜୀ ମଧୁସୁଦନ ଦାସ ଏବଂ ସ୍ୱର୍ଗତ କୁଞ୍ଜବିହାରୀ ସାହୁ ପ୍ରଭୃତିଙ୍କର ସହଯୋଗ ଓ ନେତୃତ୍ୱରେ ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ପୋଷ୍ଟଅଫିସ ଛକଠାରେ ଆରମ୍ଭ ହେଲା । ଏହାର ନାମ ସେତେବେଳେ "ଗଣେଶ ବଜାର" ନଥିଲା । ସାଧାରଣ ଲୋକେ କୁଞ୍ଜସାହୁ ଛକ ମେଢ ବୋଲି କହୁଥିଲେ । ମିଳିତ ଶୋଭାଯାତ୍ରାରେ ଉକ୍ତ ମେଢ ୪ ନମ୍ବର ସ୍ଥାନ ଲାଭ କରିଥିଲା ।

ମହାଲକ୍ଷ୍ମୀ ପୂଜାର ପ୍ରସାର ଓ ଜନସାଧାରଣଙ୍କର ସେଥିପ୍ରତି ଆଗ୍ରହ ଦେଖି ହନୁମାନ ବଜାର ସେଉଁଠାରେକ ସର୍ବପ୍ରଥମେ ୧୯୨୩ ମସିହାରେ ସ୍ୱର୍ଗୀୟ ବ୍ରଜକିଶୋର ପଟ୍ଟନାୟକ ମହାଲକ୍ଷ୍ମୀ ପୂଜା ଆରମ୍ଭ କରିଥିଲେ, ସେ ଅଞ୍ଚଳର ବାସିନ୍ଦାମାନେ ପୁଣି ଥରେ ୧୯୫୦ ମସିହାରେ ସ୍ୱର୍ଗତ ସତ୍ୟବାଦୀ ସୁବୁଦ୍ଧି ମହାପାତ୍ର, ଶ୍ରୀ ଉଦୟନାଥ ସିଂହ ପ୍ରଭୃତିଙ୍କର ନେତୃତ୍ୱ ଓ ସହଯୋଗରେ ମହାଲକ୍ଷ୍ମୀ ପୂଜାଆରମ୍ଭ କଲେ । ପୂଜା ପ୍ରତିଷ୍ଠାନର ନାମ ରହିଲା "ହନୁମାନ ଆସ୍ଥାନ ପୂଜା ପ୍ରତିଷ୍ଠାନ" । ମିଳିତ ଶୋଭାଯାତ୍ରାରେ ଉକ୍ତ ମେଢ ୫ କ୍ରମିକ ନମ୍ବର ମିଳିଲା ।

୧୯୫୧ ମସିହାରେ ସ୍ୱର୍ଗୀୟ କବିରାଜ ସଚ୍ଚିଦାନନ୍ଦ ରଥ, ସ୍ୱର୍ଗତ ଘନାନାଥ ମିଶ୍ରଙ୍କ ନେତୃତ୍ୱରେ କାଞ୍ଚନସାହି ଠାରେ ରାମେଶ୍ୱର ପାଣ୍ଡେ-ଙ୍କର ମୋଟର ଗ୍ୟାରେଜରେ ମହାଲକ୍ଷ୍ମୀ ପୂଜା ଆରମ୍ଭ ହେଲା ଓ ତାହାକୁ ସାଧାରଣ ଲୋକେ ପାଣ୍ଡେ ବାବୁ ମେଢ ବୋଲି କହିଲେ । ଉକ୍ତ ମେଢକୁ ଶୋଭାଯାତ୍ରାରେ କ୍ରମିକ ନମ୍ବର ୬ ମିଳିଲା ।

ଜଣ୍ଟିଜ ମଧୁସୂଦନ ମିଶ୍ର ଏବଂ ମୁକ୍ତାଦେଈପୁର ଶାସନର କେତେକ ଯୁବକଙ୍କ ପ୍ରେରଣା ଓ ସହଯୋଗରେ ୧୯୬୨ ମସିହାରେ ବର୍ତ୍ତମାନ ଆନନ୍ଦ ବଜାର ମହାଲକ୍ଷ୍ମୀଙ୍କର ପୂଜା ଆରାଧନା ଆରମ୍ଭ ହେଲା । ସେତେବେଳେ ଉକ୍ତ ପୂଜା ଅନୁଷ୍ଠାନକୁ ସାଧାରଣ ଲୋକେ ଶାସନ ମେଢ ନାମେ ନାମିତ କରିଥିଲେ ଏବଂ ଶୋଭାଯାତ୍ରାରେ ତାହାର କ୍ରମିକ ନମ୍ବର ୭ ହେଲା ।

ମେଢ ସଂଖ୍ୟା ବଢିବା ଫଳରେ ଓ ଲକ୍ଷ୍ମୀ ପୂଜାର ଗୌରବ ଜନସାଧାରଣରେ ଆଦୃତ ହେବାରୁ ଭସାଣୀ ଶୋଭାଯାତ୍ରା ଦେଖିବାକୁ ବହୁ ଲୋକ ଗହଳି ହେଲା । ରାତ୍ରକାଳୀନ ଶୋଭାଯାତ୍ରା କରିବାରେ ନାନା ବିଶୃଙ୍ଖଳା ଦେଖାଦେଲା । ଅସାମାଜିକ ଲୋକମାନଙ୍କର କ୍ରିୟାକଳାପ ବୃଦ୍ଧି ପାଇଲା । ଫଳରେ ମିଳିତ କମିଟିର ସେତେବେଳର ଉଦ୍ୟୋକ୍ତା ମାନେ ୧୯୬୨ ମସିହାରୁ ରାତ୍ର ଶୋଭାଯାତ୍ରା ପରିବର୍ତ୍ତେ ଦିନ ଶୋଭାଯାତ୍ରା କରିବାର ନିଷ୍ପତ୍ତି ନେଲେ । କିନ୍ତୁ ଉକ୍ତ ନିଷ୍ପତ୍ତିକୁ ମହାବୀର ଆସ୍ଥାନ ମହାଲକ୍ଷ୍ମୀ ପ୍ରତିଷ୍ଠାନ ଗ୍ରହଣ ନକରିବାରୁ ସେତେବେଳ ସୁଦ୍ଧା ଗଠନ ହୋଇଥିବା ସାତଗୋଟିଯାକ ମେଢ ମଧ୍ୟରୁ ଛଅଗୋଟି ଦିନ ବେଳା ଭସାଣି ଶୋଭାଯାତ୍ରା କଲେ । ଏବଂ ମହାବୀର ଆସ୍ଥାନ କେବଳ ରାତ୍ରି ଶୋଭାଯାତ୍ରା କଲେ । ଅବଶ୍ୟ ଉକ୍ତ ଘଟଣାର ୩ ବର୍ଷ ପରେ ୧୯୬୫ ମସିହା ବେଳକୁ ମହାବୀର ଆସ୍ଥାନର ମେଢ ପୁନଶ୍ଚ ମିଳିତ ଶୋଭାଯାତ୍ରାରେ ଯୋଗଦାନ କରି ତାଙ୍କର ପୂର୍ବ କ୍ରମିକ ନମ୍ବର ବଜାୟ ରଖିଲେ ।

୧୯୬୩ ମସିହାରେ ଶ୍ରୀ ବାରବର ସାହୁଙ୍କ ସାହାଯ୍ୟ ଓ ଉଦ୍ୟୋଗରେ ଉମାକାନ୍ତ ସାହୁ, ବୈକୁଣ୍ଠ ସାହୁ, ରଘୁନାଥ ସାହୁ ଲୋକ ମାନଙ୍କର ସହଯୋଗରେ ଶ୍ରୀ ବାରବର ସାହୁଙ୍କ ଘର ପାଖରେ ମହାଲକ୍ଷ୍ମୀଙ୍କର ପୂଜା ଅନୁଷ୍ଠିତ ହେଲା, ଯାହାକି ପରବର୍ତ୍ତୀ ସମୟରେ କାଳୀଗଳି ସାହି ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ନାମରେ ନାମିତ ହେଲା । ଅବଶ୍ୟ ସେତେବେଳେ ତାହାକୁ ବାରବର ସାହୁଙ୍କ ମେଢ ବୋଲି ଲୋକେ କହୁଥିଲେ । ମିଳିତ ଭସାଣି ଶୋଭାଯାତ୍ରାରେ ଉକ୍ତ ମେଢର କ୍ରମିକ ନମ୍ବର ୮ ହୋଇଥିଲା । ଶ୍ରୀ ବାରବର ସାହୁଙ୍କ ଘରେ ମହାଲକ୍ଷ୍ମୀଙ୍କର

ପୂଜା ବାରବର୍ଷ ସେଠାରେ ହେବାପରେ ତାଙ୍କ ଘର ସାମନାରେ ସ୍ୱର୍ଗତ ମୋହନ ଦଳେଇ ନାମରେ ଜଣେ ବଦାନ୍ୟ ବ୍ୟକ୍ତିଙ୍କର ଦାନ ଜମି ଉପରେ ଶ୍ରୀ ଗିରିବର ସାହୁ ଏବଂ ସାଇ ବାର୍ଣ୍ଣୀଙ୍କର ପ୍ରଚେଷ୍ଟାରେ ଠାକୁରାଣୀଙ୍କର ସ୍ଥାୟୀ ପୂଜା ଆସ୍ଥାନ ନିର୍ମାଣ ହେବାରୁ ସେଠାରେ ବର୍ତ୍ତମାନ ଠାକୁରାଣୀଙ୍କର ପୂଜା ହେଉଅଛି ।

ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ମାନଙ୍କ ସମ୍ପର୍କରେ ଅନୁଧ୍ୟାନ କଲେ ଜଣାଯାଏ ଯେ, ୧୯୫୨ ମସିହାରେ ପ୍ରଥମଥର ପାଇଁ ଢେଙ୍କାନାଳ ପୌରସଭାର ନିର୍ବାଚନ ହେଲା । ଦେଖାଗଲା ଯେ ଲକ୍ଷ୍ମୀପୂଜା ପ୍ରତିଷ୍ଠାନ ସହ ପ୍ରତ୍ୟକ୍ଷ ଭାବେ ସମ୍ପୃକ୍ତ ବ୍ୟକ୍ତି ମାନେ ପୌରସଭାର ସଦସ୍ୟ ଭାବେ ନିର୍ବାଚିତ ହୋଇପାରିଲେ ଓ ସମ୍ମାନ ପ୍ରତିଷ୍ଠା ଲାଭ କଲେ । ୧୯୫୫ ମସିହା ବେଳକୁ ଢେଙ୍କାନାଳ ସହରକୁ କଟକ ସହର ପରି କେତୋଟି ବଜାରରେ ବିଭକ୍ତ କରିବା ପାଇଁ କେତେଜଣ ପୌରସଭା ସଦସ୍ୟ ଓ ପୂଜା ଅନୁଷ୍ଠାନର କର୍ମକର୍ତ୍ତା ମାନଙ୍କ ମନରେ ଭାବନା ଉଦୟ ହେଲା ।

ପୁରୀର ଲକ୍ଷ୍ମୀବଜାର ଅନୁକରଣରେ ଢେଙ୍କାନାଳର ବିଶିଷ୍ଟ ବ୍ୟବସାୟୀ ଶ୍ରୀ ବି: ସାମଲଙ୍କର ପରିକଳ୍ପନାକୁ ରୂପ ଦେବାକୁ ୧୯୫୦ ମସିହାରେ ଢେଙ୍କାନାଳର ଜୁବୁଲି ମାର୍କେଟ ଅଞ୍ଚଳର ନାମ ଲକ୍ଷ୍ମୀବଜାର ହେଲା । ସେଠାରେ ହେଉଥିବା ମହାଲକ୍ଷ୍ମୀ ଅନୁଷ୍ଠାନର ନାମ '**ରାଜଲକ୍ଷ୍ମୀ ପୂଜା ଅନୁଷ୍ଠାନ**, ଲକ୍ଷ୍ମୀବଜାର' ହେଲା । ପରବର୍ତ୍ତୀ କାଳରେ ମହିଶାଳି ଅଞ୍ଚଳର ବାସିନ୍ଦା ମାନେ ୧୯୫୧ ମସିହାରେ ତାଙ୍କ ଅଞ୍ଚଳର ନାମ ମିନାବଜାର ରଖିଲେ ଏବଂ ଉକ୍ତ ମହାଲକ୍ଷ୍ମୀ ପ୍ରତିଷ୍ଠାନର ନାମ '**ମଉଡ଼ମଣି ରାଜଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ**, ମିନାବଜାର କଲେ । କୁହାଯାଏ ଯେ, ସେ ଅଞ୍ଚଳରେ ଥିବା ସ୍ୱର୍ଣ୍ଣକାର ମାନେ ସେତେବେଳେ ମିନା କାମରେ ବେଶ୍ ପାରଦର୍ଶିତା ଲାଭ କରିଥିବାରୁ ଏପରି ନାମ-କରଣ କରାଗଲା ।

ଉପରୋକ୍ତ ଦୁଇ ବଜାରର ନାମକରଣ ଦେଖି କେତେକ ବିଶିଷ୍ଟ ବ୍ୟକ୍ତି ୧୯୫୫ ମସିହାରେ ଢେଙ୍କାନାଳ ସହରର ମୁଖ୍ୟ ବ୍ୟବ-

ଧାର୍ମିକ କେନ୍ଦ୍ର, ପୋଷ୍ଟ ଅଫିସ ଛକଠାରୁ ଦୋଳମଣ୍ଡପ ପର୍ଯ୍ୟନ୍ତ ଅଂଶକୁ ମୁଖ୍ୟତଃ ନଅଟିଗୋଟି ବଜାରରେ ବିଭକ୍ତ କଲେ । ସେଗୁଡ଼ିକ ହେଲା- ଗଣେଶ ବଜାର, ମହାବୀର ବଜାର, ଲକ୍ଷ୍ମୀବଜାର, ଜବାହାର ଚୌକ, ମିନାବଜାର, କାଞ୍ଚନ ବଜାର, ଆନନ୍ଦ ବଜାର, ଜୟଲକ୍ଷ୍ମୀ ବଜାର କାଶଗର ସାହି । ପରବର୍ତ୍ତୀ ସମୟରେ କୈବର୍ତ୍ତ ବଜାର, ଚନ୍ଦନ ବଜାର, ରାଧାକୃଷ୍ଣ ବଜାର, ପଦ୍ମବଜାର ଗାନ୍ଧୀବଜାର, ରତ୍ନବଜାର ଷ୍ଟେସନବଜାର, ଦୁର୍ଗାବଜାର, ବସଷ୍ଟାଣ୍ଡ ବଜାର ପ୍ରଭୃତି ସୃଷ୍ଟି ହେଲା । ୧୯୫୫ ମସିହାରେ ପ୍ରଥମଥର ପାଇଁ ଜୟଲକ୍ଷ୍ମୀ ବଜାର (ବାଙ୍କଚୌକ) ଓ ଗୁଡ଼ଆନାଳର ମହାଲକ୍ଷ୍ମୀ ପୂଜା ଆରମ୍ଭ ହେଲା ଓ ସେମାନଙ୍କୁ ମିଳିତ ଶୋଭାଯାତ୍ରାରେ କ୍ରମିକ ନମ୍ବର ଯଥାକ୍ରମେ ୯ ଓ ୧୦ ମିଳିଲା ।

ସେତେବେଳକୁ ଲକ୍ଷ୍ମୀପୂଜାକୁ କେନ୍ଦ୍ରକରି ରାଜମାତା ମୁଣ୍ଡ ଟେକି ସାରିଥିଲା । ଅର୍ଥାତ୍ ୧୯୫୪ ମସିହା ଠାରୁ ସ୍ୱର୍ଗୀୟ ରାଜା ଶଙ୍କରପ୍ରତାପ ମହେନ୍ଦ୍ର ବାହାଦୂର ମିଳିତ ପୂଜା କମିଟିର ସଭାପତି ଭାବେ ମିଳିତ ଶୋଭା ଯାତ୍ରାକୁ ନିର୍ଦ୍ଦେଶ ଓ ପରିଚାଳନା କରିବା ଆରମ୍ଭ କରି ସାରିଥିଲେ । ପୂଜା ସହିତ ସମ୍ପୃକ୍ତ ବିଭିନ୍ନ କର୍ମକର୍ତ୍ତାଙ୍କର ଅନୁରୋଧ କ୍ରମେ ରାଜବାଟୀର "ସୁବର୍ଣ୍ଣ ଲକ୍ଷ୍ମୀ ପ୍ରତିମା"ଙ୍କୁ ଭସାଣି ଶୋଭାଯାତ୍ରାର ଶେଷଭାଗରେ ବିମାନରେ ନେବାର ଏକ ପରମ୍ପରା ୧୯୭୧ ମସିହା ପର୍ଯ୍ୟନ୍ତ କାର୍ଯ୍ୟକାରକ ହୋଇଥିଲା । ବର୍ତ୍ତମାନକୁ ଉକ୍ତ ସୁବର୍ଣ୍ଣ ଲକ୍ଷ୍ମୀ ପ୍ରତିମା ଚୋରି ହୋଇ ଯାଇଥିବାର କୁହାଯାଏ ।

୧୯୫୭ ମସିହାରେ ଦ୍ୱିତୀୟ ଥର ପାଇଁ ଢେଙ୍କାନାଳ ପୌର- ସଭାର ନିର୍ବାଚନ ଆରମ୍ଭ ହେଲା ଏବଂ ଦେଖାଗଲା ଲକ୍ଷ୍ମୀପୂଜା ସହ ସଂଶ୍ଳିଷ୍ଟ ରାଜାଙ୍କ ସମର୍ଥକ ମାନେ ଅଧିକ ସଂଖ୍ୟାରେ ପୌରସଭା ସଦସ୍ୟ ପଦ ଲାଭ କଲେ । କଂଗ୍ରେସର ସମର୍ଥକ ପୌରସଭା ସଦସ୍ୟଙ୍କ ସଂଖ୍ୟା ଅଳ୍ପ ହେଲା । ୧୯୫୭ ମସିହାରେ କଂଗ୍ରେସ ପ୍ରାର୍ଥୀଙ୍କୁ ହରାଇ ସ୍ୱର୍ଗୀୟ ରାଜା ଶଙ୍କର ପ୍ରତାପ ମହେନ୍ଦ୍ର ବାହାଦୂର ବିଧାନ ସଭାର ସଦସ୍ୟ ମଧ୍ୟ ହେଲେ । ଲକ୍ଷ୍ମୀ ପୂଜା ମାଧ୍ୟମରେ ରାଜାଙ୍କର ପ୍ରାଧାନ୍ୟ ଓ ଲୋକ ପ୍ରିୟତା ବୃଦ୍ଧିକୁ କଂଗ୍ରେସ ସମର୍ଥିତ ଲକ୍ଷ୍ମୀପୂଜା କମିଟିର ସଦସ୍ୟ ମାନେ

ସହ୍ୟକରି ପାରିଲେ ନାହିଁ । ୧୯୫୮ ମସିହାରେ ଗୁଣ୍ଡିଆନାଳ ମହାଲକ୍ଷ୍ମୀ ପୂଜାର ମେଢ଼ ମିଳିତ ଭସାଣୀ ଶୋଭାଯାତ୍ରାରେ ଯୋଗଦାନ କରିବାକୁ ରାଜି ହେଲେ ମଧ୍ୟ ଭସାଣି ଉତ୍ସବ ଶୋଭାଯାତ୍ରାରେ ରାଜନଅରକୁ ଯିବାକୁ ପ୍ରତିବାଦର ସ୍ୱର ଉଠାଇଲା । ଫଳରେ ୧୯୬୦ ମସିହା ଠାରୁ ମିଳିତ ଶୋଭାଯାତ୍ରା ରାଜବାଟୀ ରାସ୍ତାରେ ଗଲେ ମଧ୍ୟ ରାଜବାଟୀକୁ ଯିବା ପରମ୍ପରା ଉଠାଇ ଦିଆଗଲା ଏବଂ ରାଜା ସାହେବଙ୍କୁ ମିଳିତ ପୂଜା କମିଟିର ସଭାପତି କୁହାନଯାଇ ତାଙ୍କୁ **ମୁଖ୍ୟ ସେବାଧ୍ୟକ୍ଷ** ଏବଂ ରାଣୀ (ବର୍ତ୍ତମାନର ରାଜମାତା) ରତ୍ନପ୍ରଭା ଦେବୀଙ୍କୁ **ଉପସେବାଧ୍ୟକ୍ଷା** ପଦରେ ମନୋନୀତ କରାଗଲା । ଏହି ନିଷ୍ପତ୍ତି ତା ୩।୧୦।୧୯୬୦ ରିଖ ମିଳିତ ପୂଜା କମିଟିର ସଭାପତି ମାନଙ୍କର ବୈଠକରେ ନିଆ ହୋଇଥିଲା ।

ନୂଆ ନୂଆ ମହାଲକ୍ଷ୍ମୀ ପୂଜା ଆସ୍ଥାନ ମାନ ପ୍ରତ୍ୟେକ ବର୍ଷ ଢେଙ୍କାନାଳ ସହରରେ ଗଢି ଉଠିଲା । ଫଳରେ ସୃଷ୍ଟି ହୋଇଥିବା ବଜାର ଗୁଡିକର ପରିସର ପ୍ରତିବର୍ଷ ସଙ୍କୁଚିତ ହୋଇ ନୂଆ ନୂଆ ବଜାର ସୃଷ୍ଟି ହେଲା । ପୂଜା ଆଦାୟକୁ କେନ୍ଦ୍ର କରି ବିଭିନ୍ନ ସାହିର ବ୍ୟକ୍ତି ବିଶେଷଙ୍କ ସହିତ କଳହ, ମତାନ୍ତର ବୃଦ୍ଧି ପାଇଲା । ଅଶାନ୍ତି ବ୍ୟାପିଲା । ବଜାର ମାନଙ୍କର ସୀମା, ସରହଦ ନେଇ ନାନା ସମସ୍ୟା ମିଳିତ ପୂଜା କମିଟି ଆଗରେ ଦେଖାଦେଲା । ୧୯୬୩ ମସିହାରେ ପ୍ରଥମଥର ପାଇଁ କାଞ୍ଚନ ବଜାର ଓ ମିନା ବଜାରର ସୀମା, ସରହଦର ବିବାଦ ପ୍ରତି ଗୁରୁତ୍ୱ ଆରୋପ କରାଗଲା । ଫଳରେ ମିଳିତ ପୂଜା କମିଟିର ଅନୁରୋଧ କ୍ରମେ ମୁଖ୍ୟ ସେବାଧ୍ୟକ୍ଷ ସ୍ୱର୍ଗୀୟ ରାଜା ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୂରଙ୍କୁ ଏ ନିଷ୍ପତ୍ତିର ଦାୟିତ୍ୱ ଦିଆଗଲା । ସେ ଏଥିଲାଗି ତା.୧୧।୧୨।୧୯୬୪ ରିଖରେ ସ୍ୱର୍ଗତ ମହାଦେବ ରାମ, ଶ୍ରୀ ହଳଧର ମିଶ୍ର ଓ ଶ୍ରୀ ବିଶ୍ୱେଶ୍ୱର ଭୂତିଆଙ୍କୁ ନେଇ ଏକ ଅନୁସନ୍ଧାନ କମିଟି ଗଠନ କଲେ । ଉକ୍ତ କମିଟିର ସୁପାରିସ ଅନୁଯାୟୀ ତା ୨୦ । ୧୦ । ୧୯୬୪ରେ ମୁଖ୍ୟ ସେବାଧ୍ୟକ୍ଷ ନିଷ୍ପତ୍ତି ଦେଲେକି ପୂଜା ମଣ୍ଡପ ଛଡ଼ା ଅନ୍ୟତ୍ର କୌଣସି ପ୍ରକାର ସାଜସଜ୍ଜା ହେବା ଉଚିତ ନୁହେଁ କିମ୍ବା କାହାରି ଠାରୁ ବାଧ୍ୟବାଧକତାରେ ପୂଜା ଅସୁଲ କରାଯିବ

ନାହିଁ । ଦେଖାଗଲା ଏହି ନିଷ୍ପତ୍ତିକୁ ପୂଜା ପ୍ରତିଷ୍ଠାନର ମୁଖିଆ ମାନେ ନିଷ୍ଠାପର ଭାବରେ ପାଳନ କଲେ ନାହିଁ ଫଳରେ ବିଭିନ୍ନ ବଜାରର ସୀମା, ସରହଦ ନେଇ ବିବାଦ ମାନ ମୁଣ୍ଡ ଟେକିଲା । ୧୯୬୫ ମସିହା ଅଗଷ୍ଟ ୩ ତାରିଖରେ ମୁଖ୍ୟ ସେବାଧକ୍ଷ ରାଜା ଶଙ୍କର ପ୍ରତାପ ମହୀନ୍ଦ୍ର ବାହାଦୁରଙ୍କର ତିରୋଧାନ ଘଟିଲା ଏବଂ ତାଙ୍କ ପରିବର୍ତ୍ତେ ଉପସେବାଧକ୍ଷା ରାଜମାତା ରତ୍ନପ୍ରଭା ଦେବୀଙ୍କୁ ମୁଖ୍ୟ ସେବାଧକ୍ଷା ଢଙ୍ଗରେ ତା ୯ । ୧୦ । ୧୯୬୫ ରିଖରେ ମିଳିତ ପୂଜା କମିଟି ନିର୍ବାଚିତ କଲେ । ସୀମା, ସରହଦ ନେଇ ବିବାଦ ମଧ୍ୟରୁ ମିନାବଜାର ଓ କାଞ୍ଚନ ବଜାର ବିବାଦ ଗୁରୁତର ଆକାର ଧରିବାରୁ ମିନାବଜାର ଓ କାଞ୍ଚନ ବଜାର ମଧ୍ୟରେ ସୌହାର୍ଦ୍ଦ୍ୟ ଆଣିବା ଲାଗି ଢେଙ୍କାନାଳର ବିଶିଷ୍ଟ ନାଗରିକ ଶ୍ରୀ ନାରାୟଣ ମିଶ୍ର ଓ ଶ୍ରୀ ବି: ସାମଲଙ୍କ ଅନୁରୋଧ କ୍ରମେ ସମସ୍ତ ପୂଜା କମିଟିର ସଭାପତି ମାନେ ଶ୍ରୀ ବଳଦେବଜୀଉଙ୍କ ମନ୍ଦିରରେ ତା ୯ । ୧୦ । ୧୯୬୫ ରିଟରେ ମିଳିତ ହୋଇ ମିନାବଜାର ଓ କାଞ୍ଚନ ବଜାର ମଧ୍ୟରେ ସଦ୍‌ଭାବ ଫେରାଇ ଆଣିବାକୁ ଚେଷ୍ଟାକରି ପରିଶେଷରେ ବିଫଳ ହେଲେ । ୧୯୬୫ ମସିହା ବେଳକୁ ଢେଙ୍କାନାଳ ସହରରେ ୨୩ ଗୋଟି ପୂଜା ପ୍ରତିଷ୍ଠାନରେ ମହାଲକ୍ଷ୍ମୀଙ୍କର ପୂଜା ଆରମ୍ଭ ହୋଇ ସାରିଥିଲା । ମିନାବଜାର ଓ କାଞ୍ଚନ ବଜାର ସୀମା-ବିବାଦ ତୁଟି ନପାରିବାରୁ ୧୯୬୫ ମସିହା ମିଳିତ ଶୋଭାଯାତ୍ରାରୁ ଉଭୟଙ୍କୁ ମେଢଙ୍କୁ ବାଦ ଦିଆଯାଇଥିଲା । ତା ୧୬ । ୧୦ । ୧୯୬୫ ରିଖ ଦିନ ଗୁଡ଼ିଆନାଳ ମହାଲକ୍ଷ୍ମୀ ପୂଜା ଅନୁଷ୍ଠାନ ଠାରେ ୯ଥିର ନିଷ୍ପତ୍ତି ନିଆଯାଇଥିଲା ।

୧୯୬୫ ମସିହାରେ ଶ୍ରୀ ଚନ୍ଦନ ମିଶ୍ରଙ୍କର ବାଳଗୋପାଳ ଲକ୍ଷ୍ମୀ ପ୍ରତିଷ୍ଠାନ ଯାହାର କ୍ରମିକ ନମ୍ବର ୧୧ ଥିଲା, ତାହା ଉଦ୍‌ଯାପିତ ହୋଇ ବନ୍ଦ ହେଲା । ବାଳକ ସଂଘ ବା ଯୁବକ ସଂଘ ନାମରେ ଏକ ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ୧୯୫୬ ମସିହାରୁ ଜବାହର ଚୌକରେ କେତେକ ଯୁବକଙ୍କ ଉଦ୍ୟମରେ ପାଳିତ ହୋଇ ମିଳିତ ଶୋଭାଯାତ୍ରାରେ ୧୨ ନମ୍ବର କ୍ରମରେ ଯାଉଥିଲେ । କିନ୍ତୁ ୧୯୬୭ ମସିହା ଠାରୁ ତାହା ବନ୍ଦ ହୋଇ ଯାଇଅଛି । ୧୯୫୭ ମସିହାରେ ରାଧାକୃଷ୍ଣ ବଜାର



ଗୁଡ଼ିଆନାଳ—ଶ୍ରୀ ଶ୍ରୀ ମହାଲକ୍ଷ୍ମୀ—ପ୍ରତିମା ୧୯୬୭ (୧୯୬୬-୧୯୬୮ ଯାଏ ଗୁଡ଼ିଆନାଳ ପୂଜା ପ୍ରତିଷ୍ଠାନର ସଭାପତି ଶ୍ରୀଯୁକ୍ତ ବିଶ୍ୱେଶ୍ୱର ଭୂତିଆଙ୍କ ଠାରୁ ପ୍ରାପ୍ତ )



କାରିଗର ସାହି– ଲକ୍ଷ୍ମୀ ପ୍ରତିମା–୧୯୮୭

(ଦୋଳ ମଣ୍ଡପ ସାହି) ଓ ପତ୍ନ ବଜାର (ମାଣ୍ଡପାସାହି), ୧୯୫୮ ମସିହାରେ ଜୁବୁଲି ଟାଉନ-୧ ଓ କୁଞ୍ଜକାନ୍ତ ସାହି, ୧୯୫୯ ମସିହାରେ କୈବର୍ତ୍ତ ବଜାର, ୧୯୬୦ମସିହାରେ ଜୁବୁଲି ଟାଉନ-୨ (ରାମଦାସ ଛକ) ୧୯୬୧ ମସିହାରେ ଅନ୍ନପୂର୍ଣ୍ଣା ପୂଜା ଆସ୍ଥାନ (ସିମିଳିଆ) ଓ ଷ୍ଟେସନ ବଜାର (ଜ୍ଞମସାହି ଠାରେ) ପୂଜା ଆରମ୍ଭହେଲା ୧୯୬୨ମସିହାରେ ଷ୍ଟେସନ ରୋଡରେ ଶ୍ରୀ ରବ ନାରାୟଣ ଦାସଙ୍କର କରତ କଳ ଠାରେ ମହାଲକ୍ଷ୍ମୀ ପୂଜା ଆରମ୍ଭ ହୋଇ ୧୯୭୩ ମସିହା ଠାରୁ ବନ୍ଦ ହୋଇ ଯାଇଅଛି । ୧୯୬୩ ମସିହାରେ ରତ୍ନ ବଜାରର ଲକ୍ଷ୍ମୀ ପୂଜା ଆରମ୍ଭ ହେଲା । ୧୯୬୫ ମସିହାରେ ସନ୍‌ରାଇଜ୍ କ୍ଲବ ଲକ୍ଷ୍ମୀପୂଜା ପ୍ରତିଷ୍ଠାନ ଶ୍ରୀ ସୀତାନାଥ ମିଶ୍ରଙ୍କ ନେତୃତ୍ୱରେ ମହାଲକ୍ଷ୍ମୀଙ୍କର ପୂଜା ଆରମ୍ଭକରି ୧୯୭୬ ମସିହାରେ ବନ୍ଦ କରିଅଛନ୍ତି । ୧୯୬୭ ମସିହାରେ ସୁନ୍ଦରଶୁଣୀ ମାତୃ ଆସ୍ଥାନ (କଲେଜ ସାମନା), ୧୯୬୭ରେ ଚନ୍ଦନ ବଜାର, ୧୯୬୯ରେ ଗାନ୍ଧି ବଜାର ଓ ବସଷ୍ଟାଣ୍ଡ ବଜାର (ଅମଲାପଡା), ୧୯୭୧ରେ ସପନେଶ୍ୱର (କୋରଆଁ) ୧୯୭୫ରେ ଦୁର୍ଗା ବଜାର (ପାଲେସ ଛକ), ୧୯୭୬ରେ କାଳିକା ନଗର (ଦାଣ୍ଡିକୋଳି), ୧୯୭୮ରେ ନେହେରୁ ବଜାର, ୧୯୭୯ରେ ନୂଆ ବଜାର (ରାମେଶ୍ୱରପୁର) ଓ ଜୁବୁଲିଟାଉନ-୩ (କ୍ରାନ୍ତିଜନ ସାହି), ୧୯୮୨ରେ ଭଗବାନପୁର, ୧୯୮୬ରେ ଶଙ୍କର ଛକ (ସର୍ଜଙ୍ଗ ସାହି) ପୂଜା ଅନୁଷ୍ଠାନ ମାନଙ୍କରେ ଲକ୍ଷ୍ମୀପୂଜା ଆରମ୍ଭ ହୋଇ ଥିବାର ଜଣାଯାଏ ।

ଦିନକୁ ଦିନ ବଜାର ମାନଙ୍କର ସୀମା, ପରସ୍ପରର ବିବାଦ ମାନ ଗୁରୁତର ଆକାର ଧାରଣ କରିବା ଫଳରେ ପୂଜା ପ୍ରତିଷ୍ଠାନ ମାନଙ୍କ ମଧ୍ୟରେ ସ୍ନେହ ଓ ସୌହାର୍ଦ୍ଦ୍ୟ ଊଣା ହେଲା । ବିବାଦ ମାନ ଘନେଇବାରୁ ସହରର ଶାନ୍ତି ଶୃଙ୍ଖଳା ବ୍ୟାହତ ହେଲା । ମିଳିତ ପୂଜା କମିଟି ସନ୍ତୋଷଜନକ ଭାବେ ସୀମାସରହଦ ସମସ୍ୟାକୁ ତୁଟାଇ ପାରିଲା ନାହିଁ । ତେଣୁ ୧୯୭୬ ମସିହା ମହାଲକ୍ଷ୍ମୀ ପୂଜା ଆରମ୍ଭର ପରଦିନ ଅର୍ଥାତ୍ ତା ୨୯ । ୧୦ । ୧୯୭୬ ରିଖରେ ମୁଖ୍ୟ ସେବାଧକା ରାଜମାତା ରତ୍ନପ୍ରଭା ଦେବୀ ତାଙ୍କ ପଦବୀରୁ ଇସ୍ତଫା ଦେଲେ । ମିଳିତ ପୂଜା କମିଟିର ସଦସ୍ୟମାନେ ଉକ୍ତ ତାରିଖ ଦିନ ବୈଠକ

ମହାଦେବରାମଙ୍କୁ ମିଳିତ ପୂଜା କମିଟିର ପରିଚାଳନା ପାଇଁ ସଭାପତି ଭାବେ ଦାୟିତ୍ୱ ଦେଲେ । ସେ ମହାଶୟ ୧୯୬୮ ମସିହାରୁ ଗ୍ରହଣ କରି ୧୯୭୩ ମସିହା ଯାଏ ଉକ୍ତ ପଦବୀରେ ରହିଥିବାର ଜଣାଯାଏ । ରାଜପରିବାରର ମିଳିତ ପୂଜା କମିଟି ଉପରେ ଥିବା କର୍ତ୍ତୃତ୍ୱ ହ୍ରାସ ପାଇଲା । ରାଜବାଟୀର ସୁବର୍ଣ୍ଣ ପ୍ରତିମା ପୂର୍ବବତ୍ ମିଳିତ ଶୋଭାଯାତ୍ରାରେ ସବା ପଛରେ ଯିବାର ପରମ୍ପରା ରକ୍ଷା କଲେ ଓ ୧୯୭୧ ପର୍ଯ୍ୟନ୍ତ ଏହା ପାଳନ କରୁଥିଲେ ।

ମିନା ବଜାର ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ୧୯୬୫ ଠାରୁ ୧୯୬୭ ମସିହା ଯାଏ ୩ ବର୍ଷ ମିଳିତ ଶୋଭାଯାତ୍ରାରେ ଯୋଗ ଦେଇନଥିଲେ । ସେହିପରି କାଞ୍ଚନ ବଜାର ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ୧୯୬୫ ବା ୧୯୬୯ ଠାରୁ ୧୯୭୭ ଯାଏ ମିଳିତ ଶୋଭାଯାତ୍ରାରେ ଭାଗ ନେଇ ନଥିଲେ । ୧୯୭୭ ଠାରୁ ମିନା ବଜାର ସମେତ ସମସ୍ତ ଲକ୍ଷ୍ମୀ ଠାକୁ-ରାଣୀଙ୍କ ମେଢ଼ ମିଳିତ ଶୋଭାଯାତ୍ରାରେ ଯୋଗଦାନ କରି ଶୃଙ୍ଖଳା-ସହକାରେ ୧୯୭୮ ମସିହା ଯାଏ ଯାଉଥିବାର ଜଣାଯାଏ । ୧୯୭୮ ମସିହାରେ ମିଳିତ ଶୋଭାଯାତ୍ରା ରଜ (ହସ୍ତୀ)ଙ୍କ ଗହଣରେ ଯିବା ନେଇ କେତେକ ବଜାର ମଧ୍ୟରେ ସାମାନ୍ୟ ଉତ୍ତେଜନା ସୃଷ୍ଟି ହୋଇ ମିଳିତ ଶୋଭାଯାତ୍ରା ପରିଚାଳନାରେ ବ୍ୟାଘାତ ଘଟି ଭସାଣି ଉତ୍ସବ ସମାପ୍ତ କରିବାରେ ବିଳମ୍ବ ଘଟିବାରୁ ବହୁ ମେଢ଼ ସେମାନଙ୍କର ଲକ୍ଷ୍ମୀ ମୂର୍ତ୍ତିକୁ ସହର ମଧ୍ୟସ୍ଥ ବିଭିନ୍ନ ପୁଷ୍କରିଣୀରେ ବିସର୍ଜନ କରିଦେଇଥିଲେ । ଯାହାହେଉ ୧୯୭୯ ମସିହାରୁ ସହରର ସମସ୍ତ ମହାଲକ୍ଷ୍ମୀଙ୍କ ମେଢ଼ ଏକତ୍ର ଭସାଣି ଶୋଭାଯାତ୍ରାରେ ଯାଉଥିଲେ ମଧ୍ୟ ରତନ ବଜାର ଉକ୍ତ ବର୍ଷ ଠାରୁ ମିଳିତ ଶୋଭାଯାତ୍ରାରେ ଯୋଗ ନଦେଇ ନିଜର ଭସାଣି ଉତ୍ସବ ସ୍ୱତନ୍ତ୍ର ଭାବେ ପାଳନ କରି ଆସୁଅଛନ୍ତି ।

ମାମା, ମରହବ ଜବାଦ ବ୍ୟାଟକେ ଦୃଷ୍ଟେ ୧୯୬୫ ମସିହା ଠାରୁ ଶୋଭାଯାତ୍ରା ପରିଚାଳନା ପାଇଁ ଅନେକତେ କଣ୍ଟକଣ ବିଶେଷ ଭାବେ

ଲାଗୁ ହେଉଅଛି । ପୂଜା ସମୟକୁ ମିନା ବଜାର ଓ କାଞ୍ଚନ ବଜାର ମଧ୍ୟ ସ୍ଥଳର ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ୧୪୪ ଧାରା ଜାରି କରାଯାଇ ଉକ୍ତ ଅଞ୍ଚଳକୁ ନିଷିଦ୍ଧାଞ୍ଚଳରେ ପରିଣତ କରାଯିବା ଏକ ପରମ୍ପରା ହୋଇଗଲାଣି । ଉକ୍ତ ଅଞ୍ଚଳର ବାସିନ୍ଦା ମାନେ କୌଣସି ପ୍ରକାର ସାଜସଜ୍ଜା କିମ୍ବା ଆଲୋକ ସଜ୍ଜା ନିଜ ଘର ଦ୍ଵାରରେ ମଧ୍ୟ କରିବାକୁ ଅନୁମତି ପାଉନାହାନ୍ତି । ଏହା ସତ୍ତ୍ୱେ ମାତ୍ର ରତ୍ନ ବଜାର ଲକ୍ଷ୍ମୀ ପ୍ରତିଷ୍ଠାନକୁ ଛାଡିଦେଲେ ଗତ ବର୍ଷ (୧୯୮୭) ସହରରେ ହୋଇଥିବା ସର୍ବମୋଟ ୩୧ ଗୋଟି ମହାଲକ୍ଷ୍ମୀ ପୂଜା ଅନୁଷ୍ଠାନ ମଧ୍ୟରୁ ୩୦ ଗୋଟି ପୂଜା ଅନୁଷ୍ଠାନର ମୂର୍ତ୍ତି ମିଳିତ ଶୋଭାଯାତ୍ରାରେ ଯିବାର ନିଷ୍ପତ୍ତି ନେଇଥିଲେ । ସୁଖର କଥା, ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ମାନଙ୍କର ପରିଚାଳକ ଗଣ, ମିଳିତ ପୂଜା କମିଟିର କର୍ମକର୍ତ୍ତା ଗଣ ଓ ଜିଲ୍ଲା କର୍ତ୍ତୃପକ୍ଷଙ୍କର ସକ୍ରିୟ ଉଦ୍ୟମ ଓ ସହଯୋଗ ଫଳରେ ଆଇନ ଶୃଙ୍ଖଳା ରକ୍ଷା ସହକାରେ ଭସାଣି ଶୋଭାଯାତ୍ରାକୁ ପରିଚାଳନା କରିବାର ପରମ୍ପରା ରକ୍ଷା କରାଯାଇ ପାରୁଅଛି ।

ଢେଙ୍କାନାଳର ମିଳିତ ଶୋଭାଯାତ୍ରା ପରିଚାଳନା ନୀତି ସୃଷ୍ଟି ହୋଇଥିବା ପରମ୍ପରା ଅନୁଧ୍ୟାନ କଲେ ଜଣାଯାଏ ଯେ, ମିଳିତ ମହାଲକ୍ଷ୍ମୀ ପୂଜା କମିଟିର ସଦସ୍ୟ ଭାବେ କୌଣସି ପୂଜା ପ୍ରତିଷ୍ଠାନ ଯୋଗଦେଲେ, ତାକୁ ଏକ ନିର୍ଦ୍ଦିଷ୍ଟ ନମ୍ବର ଦିଆଯାଏ । ଏହା ମୁଖ୍ୟତଃ ଉକ୍ତ ପ୍ରତିଷ୍ଠାନର ଯୋଗଦାନ ବର୍ଷକୁ ଭିତ୍ତିକରି ମିଳେ । ଉକ୍ତ କ୍ରମିକ ନମ୍ବର ରକ୍ଷାକରି ମେଢ ମାନେ ଶୋଭାଯାତ୍ରାରେ ଆଗପଛ ହୋଇ ଯିବାର ବିଧି ରହି ଆସିଅଛି । କୌଣସି ପୂଜା ପ୍ରତିଷ୍ଠାନ ପୂଜା ଉଦ୍‌ଯାପନ କରିଦେଲେ ବା ମିଳିତ ଶୋଭାଯାତ୍ରାରେ ନଯିବାର ନିଷ୍ପତ୍ତି ନେଲେ, ଉକ୍ତ ମେଢର କ୍ରମିକ ନମ୍ବର ପରବର୍ତ୍ତୀ ମେଢ଼କୁ ଦିଆଯାଏ । ଏହାଛଡ଼ା ମହାଲକ୍ଷ୍ମୀ ପୂଜା ଆରମ୍ଭର କିଛି ଦିନ ପୂର୍ବରୁ ବିଗତ ବର୍ଷରେ ଶୋଭାଯାତ୍ରାରେ ଯାଇଥିବା ପ୍ରଥମ ମେଢର ସଭାପତି ବା ସମ୍ପାଦକଙ୍କର ଅନୁରୋଧ କ୍ରମେ ମୁଖ୍ୟ ସେବାଧ୍ୟକ୍ଷ ମିଳିତ ପୂଜା କମିଟିର ସଦସ୍ୟ ମାନଙ୍କର ଏକ ବୈଠକ ଡକାଇ ଆଗାମୀ ବର୍ଷର ମିଳିତ ଶୋଭାଯାତ୍ରା ସମ୍ପର୍କରେ ଆଲୋଚନା କରନ୍ତି । କିନ୍ତୁ

ଉକ୍ତ ବୈଠକରେ ଆଲୋଚିତ ବର୍ଷର ଉପାର୍ଜିତ ଟଙ୍କା ଦିବସ ସ୍ଥିରୀକୃତ ହେବା ସାଙ୍ଗେ ବହୁତ୍ଵରୁ ଚାନ୍ଦା ବୋଲି ଗୃହୀତ ହୋଇ ଆସିଅଛି । ଏହି ବୈଠକରେ ମଧ୍ୟ ସାହି ସାହି ମଧ୍ୟରେ ଥିବା ସୀମା ବିବାଦ ସମ୍ପର୍କରେ ନିଷ୍ପତ୍ତି ନିଆଯାଇଥାଏ ।

ଲକ୍ଷ୍ମୀପୂଜା ଆରମ୍ଭର ପର ଦିବସ ବିଗତ ବର୍ଷ ମିଳିତ ଶୋଭାଯାତ୍ରାରେ ପ୍ରଥମେ ଯାଇଥିବା ମେଢର ସଭାପତି କିମ୍ବା ସମ୍ପାଦକ ବିଭିନ୍ନ ପୂଜା କମିଟି ସଭାପତିଙ୍କର ବୈଠକ ଡାକିବା ନିଶ୍ଚିତ ଅଟେ ଓ ଏଥିରେ ଆଗାମୀ ଉପାର୍ଜିତ ଉତ୍ସବ ସମ୍ପର୍କରେ ଏବଂ ନୂତନ ଭାବେ ପୂଜାରମ୍ଭ କରୁଥିବା ପୂଜା ପ୍ରତିଷ୍ଠାନ ମାନଙ୍କର ସଭ୍ୟ ହେବାକୁ ଆସିଥିବା ଦରଖାସ୍ତ ଗୁଡିକ ବିଚାରକୁ ନେଇ ଉକ୍ତ ମେଢ ଗୁଡ଼ିକୁ କ୍ରମିକ ନମ୍ବର ଦିଆଯାଏ । ମିନା ବଜାରମିଳିତ ଶୋଭାଯାତ୍ରା ଆରମ୍ଭ ହେବା ଦିନଠାରୁ ୧୯୬୪ ମସିହା ପର୍ଯ୍ୟନ୍ତ ଏହି ସମ୍ମାନର ଅଧିକାରୀ ଥିଲେ । କିନ୍ତୁ ୧୯୬୫ ଠାରୁ ୧୯୬୭ ଯାଏ ମିଳିତ ଶୋଭାଯାତ୍ରାରେ ନଯିବା ଫଳରେ ୨ ନମ୍ବର ମେଢ ଜବାହାର ଚୌକ ଉକ୍ତ ଅଧିକାର ଲାଭ କରିଥିଲେ । ପୁନଶ୍ଚ ୧୯୬୮ ମସିହାରେ ମିନା ବଜାର ମିଳିତ ଶୋଭାଯାତ୍ରାରେ ଯୋଗଦାନ କରି ଉକ୍ତ ଅଧିକାରକୁ ୧୯୬୯ ଠାରୁ ଲାଭକରି ପୂଜା ଆରମ୍ଭର ପରଦିନ ବିଭିନ୍ନ ଲକ୍ଷ୍ମୀପୂଜା ଅନୁଷ୍ଠାନର ସଭାପତି ମାନଙ୍କର ବୈଠକ ଡାକି ଆସୁଅଛନ୍ତି । ମୁଖ୍ୟ ସେବାଧିପ ପଦରୁ ରାଜପରିବାର ଓହରି ଯିବା ପରଠାରୁ ମିଳିତ ପୂଜା କମିଟିର କୌଣସି ସ୍ଥାୟୀ ସଭାପତି ନାହାନ୍ତି । ତେଣୁ ପୂଜା ଆରମ୍ଭର ପରଦିନ ମିନା ବଜାର ଦ୍ୱାରା ଆହୂତ ବୈଠକରେ ଉପସ୍ଥିତ ଥିବା ସଦସ୍ୟ ମାନଙ୍କ ମଧ୍ୟରୁ ଜଣକୁ ମିଳିତ ଲକ୍ଷ୍ମୀପୂଜା ପରିଚାଳନାର ମୁଖ୍ୟ ଭାବେ ବଛାଯାଏ ଏବଂ ତାଙ୍କୁ ସହଯୋଗ କରିବାକୁ କେତେଜଣ ବିଶିଷ୍ଟ ସଭ୍ୟଙ୍କୁ ନେଇ ଏକ କମିଟି ଗଠନ କରାଯାଇଥାଏ । ଏହି ପ୍ରଥା ମୁଖ୍ୟତଃ ୧୯୭୨ ମସିହାରୁ କାର୍ଯ୍ୟକାରକ ହୋଇ ଏକ ପରମ୍ପରାରେ ପରିଣତ ହେଲାଣି ।

ଢେଙ୍କାନାଳ ମହାଲକ୍ଷ୍ମୀ ପୂଜା ବହୁ ବାଧାବିଘ୍ନ ଏଡାଇ ବର୍ଷକୁ ବର୍ଷ ବଡ ଆଡମ୍ବର ପୂର୍ଣ୍ଣ, ଚିତ୍ତାକର୍ଷକ ଆଲୋକ ସଜ୍ଜା ମଧ୍ୟରେ ସମ୍ପାଦିତ

ହେଉଅଛି । ବର୍ତ୍ତମାନ କଳା ବାଉଁଶର ବଡ଼ ବଡ଼ ତୋରଣମାନ ନୂଆ ଢଙ୍ଗରେ ଦେଶର କଳା ସ୍ଥାପତ୍ୟକୁ ଆଖିରେ ରଖି ପ୍ରତି ବର୍ଷ ନୂଆ ନୂଆ ଭାବେ ପୂଜା ଆସ୍ଥାନ ସମ୍ମୁଖରେ ବା ବଜାର ମଧ୍ୟସ୍ଥଳରେ ଗଢ଼ିଉଠି ସହରର ଶୋଭା ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଦର୍ଶକ ମାନଙ୍କର ମନୋରଞ୍ଜନ କରି ପାରୁଅଛି । ରଙ୍ଗ ବେରଙ୍ଗର ଆଲୋକ ମାଳା ସହ ବାଉଁସଇଟ ଦ୍ୱାରା ବଜାରର ପ୍ରଧାନ ରାସ୍ତାକୁ ସେ ସମୟରେ ଆଲୋକରେ ସୁସଜ୍ଜିତ କରାଯାଉଅଛି । ସହରର ପ୍ରଧାନ ରାସ୍ତାର ପ୍ରାୟ ୩ କିଲୋମିଟରର ଦୈର୍ଘ୍ୟ ଅଞ୍ଚଳ ଆଲୋକ ଦ୍ୱାରା ଉଦ୍ଭାସିତ ହେଉଥିବା ଫଳରେ ସେହି କେତେ ଦିନ ଢେଙ୍କାନାଳ ସହର ଇନ୍ଦ୍ରଭୁବନର ଶୋଭାକୁ ଧାରଣ କରି ପାରୁଅଛି । ଏହାଛଡ଼ା ପୂଜା ଆସ୍ଥାନ ମାନଙ୍କରେ ଲକ୍ଷ୍ମୀ ଠାକୁରାଣୀଙ୍କର ଭିନ୍ନ ଭିନ୍ନ ଠାଣି ଓ ଭଙ୍ଗୀର ମୂର୍ତ୍ତି ଗଠନ ସାଙ୍ଗକୁ ପୁରାଣ ବର୍ଣ୍ଣିତ କାହାଣୀକୁ ଆଧାର କରି ଗଠିତ ପାର୍ଶ୍ୱ ମୂର୍ତ୍ତି ଗୁଡ଼ିକ ପୂଜା ମଣ୍ଡପର ଶୋଭାକୁ ଆଲୋକର ଜ୍ୟୋତି ମଧ୍ୟରେ ରମଣୀୟ ଚମତ୍କାରିକ କରି ତୋଳୁଅଛି ।

ପୂଜା ଅନୁଷ୍ଠାନର ଲକ୍ଷ୍ମୀ ମୂର୍ତ୍ତି ଗୁଡ଼ିକର ରୂପ ବର୍ଣ୍ଣନା କରିବା ସମ୍ଭବପର ନହେଲେ ମଧ୍ୟ ଦେଖାଯାଏ କେଉଁ ଅନୁଷ୍ଠାନରେ ଲକ୍ଷ୍ମୀ ଠାକୁରାଣୀ ଗଜଲକ୍ଷ୍ମୀ ବେଶ ଧାରିଣୀ, କେଉଁଠି ହସ୍ତୀ ଉପରେ ଆସୀନା, କେଉଁଠି ମର୍ତ୍ତ୍ୟ ଲୋକରେ ଆବିର୍ଭୂତା ମହାଲକ୍ଷ୍ମୀ, କେଉଁଠି ନାରାୟଣଙ୍କ ପାଦଦେଶରେ ଆସୀନା କେଉଁଠି ପଦ୍ମ ଉପରେ ଦଣ୍ଡାୟମାନା ତ କେଉଁଠି ସହଚରୀ ପରିବେଷ୍ଟିତା, କେଉଁଠି କ୍ଷୀରସାଗର ଚଣ୍ଡାଳୁଣୀର ଲକ୍ଷ୍ମୀ ତ କେଉଁଠି ସମୁଦ୍ର ମନ୍ଥନରୁ ଆବିର୍ଭୂତାଲକ୍ଷ୍ମୀ କେଉଁଠି ରଥ ଉପରେ ଉପବେଷ୍ଟିତା କେଉଁଠି ସିଂହାସନ ଆରୂଢ଼ା । ଏହିପରି ପୌରାଣିକ ଆଖ୍ୟାନ ମାନକୁ ଭିତ୍ତିକରି ଲକ୍ଷ୍ମୀ ମୂର୍ତ୍ତି ମାନ ଗଠିତ ହୋଇଥାନ୍ତି । ବର୍ତ୍ତମାନ ସ୍ଥଳ ବିଶେଷରେ ଶିଳ୍ପୀ ମାନେ ସୂକ୍ଷ୍ମ ଝିନ୍ ବସ୍ତ୍ର ପରିହିତା ଲକ୍ଷ୍ମୀ ଠାକୁରାଣୀଙ୍କର ସୌନ୍ଦର୍ଯ୍ୟକୁ ପରିସ୍ଫୁଟ କରାଇ ଚଳଚିତ୍ର ନାୟିକାର ରୂପ ସମ୍ଭାର ବା ଠାଣିମା ଆରୋପ କରାଇବାକୁ ପଶ୍ଚାଦ୍ ନାହାନ୍ତି । ଯାହା ହେଉନା କାହିଁକି, ସହସ୍ରାଧିକ ଦର୍ଶକ ପ୍ରତ୍ୟେକ ବର୍ଷ ଢେଙ୍କାନାଳର ମହାଲକ୍ଷ୍ମୀ ପୂଜା ଦେଖିବା

ଲାଗି ଓଡ଼ିଶା ଓ ଓଡ଼ିଶା ବାହାରୁ ଆସୁଅଛନ୍ତି । ବ୍ୟବସାୟ ଏବଂ ଢେଙ୍କାନାଳର ମହାଲକ୍ଷ୍ମୀ ପୂଜାର ଗୌରବ ସବଦ ବର୍ଦ୍ଧିତ ହୋଇ ଯାଉଅଛି ।

ବଡ଼ ବଡ଼ ପୂଜା ଅନୁଷ୍ଠାନର ସାଜସଜ୍ଜା ସହ ନାଚ, ତାମସା, ଗୋଟିପୁଅ ନାଚ, ଯାତ୍ରା ପାଟିଆ ପ୍ରଭୃତି ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ପୂଜା ସମୟରେ ପରିବେଷିତ ହୋଇ ହଜାର ହଜାର ଦର୍ଶକ ମାନଙ୍କର ମନୋରଞ୍ଜନ କରାଯାଇଥାଏ । ଏହାକୁ ପ୍ରତ୍ୟେକ ସହସ୍ରାଧିକ ଦର୍ଶକ ଉପଭୋଗ କରନ୍ତି । ବର୍ତ୍ତମାନ ମେଲୋଡ଼ି ପାର୍ଟିରେ ସଙ୍ଗୀତର ମୂର୍ଚ୍ଛନା ସହ ଡିସ୍କୋ ନାଚ ଏବଂ ନାମକରା ସଙ୍ଗୀତ କଳାକାର ମାନଙ୍କର ପରପାର୍ଶ୍ୱ ସଙ୍ଗୀତ ପରିବେଷଣ ଯୁବକପ୍ରବାହକୁ ବେଶ୍ ଆମୋଦ ଦେଇ ପାରୁଅଛି । ଉଚ୍ଛ୍ୱସିତ ଆନନ୍ଦ ଉଲ୍ଲାସରେ ସେମାନେ ହେଉଛନ୍ତି ଆତ୍ମହରା । ଭସାଣୀ ଦିନର ମୃଦଙ୍ଗ ବାଦ ଏବଂ ଭସାଣୀ ଶୋଭାଯାତ୍ରାରେ ଭାରତର ନାମକରା ବ୍ୟାଣ୍ଡ ପାର୍ଟି ମଧୁର ଧ୍ୱନୀ ଓ ତାଳ ଦର୍ଶକ ମାନଙ୍କୁ ବିଶେଷ ଆକୃଷ୍ଟ କରିବା ସଙ୍ଗେ ସଙ୍ଗେ ଶୋଭାଯାତ୍ରା ସହ ଯାଉଥିବା ଡିସ୍କୋ ନାଚ, ବହୁ ରୂପା ନାଚ ସମସ୍ତଙ୍କୁ ଆକର୍ଷଣ କରିଥାଏ । ଦର୍ଶକ ଆତ୍ମହରା ଓ ଅଧିର ହୋଇ ପାରିପାର୍ଶ୍ୱିକ ପରିବେଶକୁ ମଧ୍ୟ ଭୁଲିଯାଏ ।

ବର୍ଷକୁ ବର୍ଷ ରାସ୍ତା ପାର୍ଶ୍ୱରେ ଉନ୍ମୁକ୍ତ ଆକାଶ ତଳେ ଖୋଲା ଯାଉଥିବା ଗୃହର ଦୋକାନୀ ସାଙ୍ଗକୁ ବିଭିନ୍ନ ପୂଜା ପ୍ରତିଷ୍ଠାନ ମାନଙ୍କର ଲୋଭନୀୟ ବସ୍ତୁ ପ୍ରାପ୍ତିର ଲଟେରୀ ଟିକେଟ ଏବଂ ବିଭିନ୍ନ ବ୍ୟବସାୟୀ ଅନୁଷ୍ଠାନର ରିହାତି ମୂଲ୍ୟରେ ବିକ୍ରୟ ସାମଗ୍ରୀ ଜନିତ ଡାକବାଜି ପ୍ରଚୁର ଦର୍ଶକ ମାନଙ୍କୁ ପ୍ରଲୋଭିତ କରିଥାଏ । ରାମ ଦୋଳି, ଘୋଡ଼ା ଦୋଳି, ଇଲେକ୍ଟ୍ରିକ ଚକ୍ର ଦୋଳି, ଭ୍ରାମ୍ୟମାଣ ଚିଡ଼ିଆଖାନା, ବଜାରି କନ୍ୟାର କୁହୁକ ସାଙ୍ଗକୁ ବିଭିନ୍ନ ପ୍ରେକ୍ଷାଳୟର ଚଳଚିତ୍ର, ନାଟକ ମଞ୍ଚ ବାଳକ, ବାଳିକା ଏପରିକି ବୟସ୍କ ମାନଙ୍କୁ ମଧ୍ୟ ଆକୃଷ୍ଟ କରେ । ସନ୍ଧ୍ୟାରେ ଢେଙ୍କାନାଳ ସହର ବିଜୁଳିବତୀ ସମାରୋହରେ ଉଦ୍ଭାସିତ ହୋଇ ମର୍ତ୍ତ୍ୟ ବୈକୁଣ୍ଠରେ ପରିଣତ ହୁଏ ।

ଲକ୍ଷ୍ମୀପୂଜା ଦେଖିବାକୁ ହଜାର ହଜାର ଦର୍ଶକ ଗାଡ଼ି, ମୋଟର, ବସ୍, ଟ୍ରେନ ଯୋଗେ ଆସନ୍ତି । ଢେଙ୍କାନାଳ ମାଟି ଛୁଇଁବାକୁ ଓ ଲକ୍ଷ୍ମୀଙ୍କୁ ଦେଖିବାକୁ ସତେ ଯେପରି ସେମାନେ ଆତ୍ମହରା । ସେମାନଙ୍କର ଆକାଂକ୍ଷା ଦେଖି କବିଙ୍କର ଉପମା "ସୁନ୍ଦରେ ତୃପ୍ତିର ଅବସାଦ ନାହିଁ, ଯେତେ ଦେଖୁଥିଲେ ନୂଆ ଦିଶୁଥାଇ"—ର ସତ୍ୟତା ଉପଲବ୍ଧି କରାଯାଏ । ଏସବୁ ସତ୍ତ୍ୱେ ସହରର ଦୋକାନି ମାନେ ଲକ୍ଷ୍ମୀପୂଜା ସମୟରେ ବିଶେଷ ବିକ୍ରି କରିପାରୁ ନଥିବାର ଅଭିଯୋଗ ମାନ କରନ୍ତି । କାରଣ ସ୍ୱରୂପ ସେମାନେ ପ୍ରକାଶ କରନ୍ତି ରାସ୍ତାର ଉଭୟ ପାର୍ଶ୍ୱରେ ସେମାନଙ୍କର ଦୋକାନ ସାମନାରେ ଲକ୍ଷ୍ମୀପୂଜା ସମୟରେ ବିଭିନ୍ନ ଉଠା ଦୋକାନ ମାନ ଗଢି ଉଠୁଅଛି । ଫଳରେ ଉଠା ଦୋକାନି ମାନେ କ୍ରେତା ମାନଙ୍କର ପ୍ରତ୍ୟକ୍ଷ ସଂପର୍କରେ ପ୍ରଥମେ ଆସୁଥିବାରୁ ସେମାନେ ବେଶୀ ବିକ୍ରି କରିବାର ସୁଯୋଗ ନଥାନ୍ତି ।

ଏତଦ୍ ବ୍ୟତୀତ ବିରାଟ ବିରାଟ ରଙ୍ଗ ବେରଙ୍ଗ କନାରେ ଗଢି ଉଠୁଥିବା ତୋରଣ ମାନ, ଆଲୋକର ସାଜସଜ୍ଜା, ମହାଲକ୍ଷ୍ମୀ ଓ ପାର୍ଶ୍ୱ ମୃଣ୍ମୟ ମୂର୍ତ୍ତି ଗଢିବା ପ୍ରଭୃତି କୌଶଳପୂର୍ଣ୍ଣ କାର୍ଯ୍ୟକ୍ରମ ମାନ ଢେଙ୍କାନାଳ ବାହାର କାରିଗର ମାନେ ସଂପାଦନ କରୁଥିବାରୁ ଏବଂ ସେସବୁ କରିବାକୁ ବର୍ତ୍ତମାନ ସୁଦ୍ଧା ସ୍ଥାନୀୟ କାରିଗର ଆଗଭର ହୋଇ ନଥିବାରୁ ଏଥିରେ ବ୍ୟୟିତ ହେଉଥିବା ଲକ୍ଷାଧିକ ଅର୍ଥ ଢେଙ୍କାନାଳ ବାହାରକୁ ପ୍ରତିବର୍ଷ ଚାଲିଯାଉଅଛି । ଫଳରେ ଲକ୍ଷ୍ମୀପୂଜା ଉପଲକ୍ଷେ ଢେଙ୍କାନାଳର ଅର୍ଥନୀତି ବିଶେଷ ଭାବେ ପ୍ରଭାବିତ ହୋଇ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ ମାନଙ୍କର ମୂଲ୍ୟ ବୃଦ୍ଧି ଘଟୁଥିଲେ ମଧ୍ୟ ଢେଙ୍କାନାଳର ବାସିନ୍ଦା ମାନେ ତଦ୍ୱାରା ଉପକୃତ ହୋଇପାରୁ ନାହାନ୍ତି । ପୂଜା ପ୍ରତିଷ୍ଠାନର ଉଦ୍ୟୋଗୀ ମାନେ ଏହି ଅଭିଯୋଗର ସତ୍ୟତା ପ୍ରତି ଗୁରୁତ୍ୱ ଆରୋପ କରି ସ୍ଥାନୀୟ କାରିଗର ମାନଙ୍କୁ ଏଥିପ୍ରତି ଉତ୍ସାହିତ କରିବା ବିଧେୟ । ତାହା ହେଲେ ଲକ୍ଷ୍ମୀପୂଜା ଢେଙ୍କାନାଳ ଅର୍ଥନୀତିକୁ ସମୃଦ୍ଧ କରିପାରିବ ।

କଟକ ସହରରେ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣିମାକୁ ଶ୍ରୀ ଚୈତନ୍ୟଙ୍କର ଶୁଭାଗମନକୁ ଆଧାର କରି ବାଲିଯାତ୍ରା ମାତ୍ର ୪ ଦିନ

ପାଇଁ ହୋଇ ଉଦ୍‌ଯାପିତ ହେଉଥିଲେ ମଧ୍ୟ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ପୃଷ୍ଠପୋଷକତାରେ ପରିଚାଳିତ ନିଗମ ମାନେ ସରକାରୀ ଓ ବେସରକାରୀ ଶିଳ୍ପ ସଂସ୍ଥା ମାନେ ଓ ବିଭିନ୍ନ ଯୋଜନା ବିଭାଗ ମାନେ ସେମାନଙ୍କର ପ୍ରଦର୍ଶନୀ ପ୍ରଚୁର ମଣ୍ଡପ ପ୍ରତ୍ୟେକ ବର୍ଷ ବାଲିଯାତ୍ରା ପଡ଼ିଆରେ ଖୋଲିଥାନ୍ତି । ତଦ୍ୱାରା ନାଗରିକ ମାନେ ସରକାରଙ୍କର ବିଭିନ୍ନ ଯୋଜନା ସମ୍ପର୍କରେ ଜ୍ଞାନ ଆହରଣ କରିବାର ସୁଯୋଗ ଲାଭ କରନ୍ତି । କିନ୍ତୁ ପରିତାପର ବିଷୟ ଢେଙ୍କାନାଳ ଠାରେ ଲକ୍ଷ୍ମୀପୂଜା ୧୧ ଦିନ ବ୍ୟାପି ଅତିବ ଆଡ଼ମ୍ବରପୂର୍ଣ୍ଣ ଭାବରେ ସମ୍ପାଦିତ ହୋଇ ଲକ୍ଷାଧିକ ଦର୍ଶକଙ୍କୁ ଆକୃଷ୍ଟ କରି ଉତ୍ସବଟିକୁ ଏକ ବିରାଟ ମେଳାରେ ପରିଣତ କରିବାର ଗୌରବର ଅଧିକାରୀ ହୋଇଥିଲେ ମଧ୍ୟ କେନ୍ଦ୍ର ବା ରାଜ୍ୟ ସରକାରଙ୍କ ଦ୍ୱାରା ପରିଚାଳିତ କୌଣସି ସଂସ୍ଥା ବା ଢେଙ୍କା-ନାଳ ସହର ନିକଟ ତଥା ଜିଲ୍ଲାରେ ଗଢି ଉଠିଥିବା ସରକାରୀ ତଥା ବେସରକାରୀ ଶିଳ୍ପାନୁଷ୍ଠାନ ମାନେ ସେମାନଙ୍କର ବିକାଶ କାର୍ଯ୍ୟ-କ୍ରମର ପ୍ରଦର୍ଶନୀ ମଣ୍ଡପ ଏଠାରେ ଖୋଲନ୍ତି ନାହିଁ । କେଉଁ କାରଣରୁ ସରକାର ତଥା ଶିଳ୍ପ ଉଦ୍‌ଯୋଗୀ ମାନେ ଏଥିପ୍ରତି ବିତୃଷ୍ଣ ଏହା ବିଚାର ବିଷୟ । ପ୍ରଚାର ଉପଲକ୍ଷେ ସରକାରଙ୍କ ନିଗମ ତଥା ଶିଳ୍ପ ପ୍ରତିଷ୍ଠାନ ମାନେ ସେମାନଙ୍କର ବାର୍ଷିକ ଅଟକଳରେ ସହସ୍ରାଧିକ ଟଙ୍କା ପ୍ରଚାର ଉଦ୍ଦେଶ୍ୟରେ ରଖୁଥିଲେ ମଧ୍ୟ ଢେଙ୍କାନାଳ ପାଇଁ ଉଦାସୀନତା କ୍ଷୋଭର ବିଷୟ । ପ୍ରଚୁର ମଣ୍ଡପ ମାନ ଖୋଲିଯାଇ ପାରୁଥିଲେ ସରକାରଙ୍କର କାର୍ଯ୍ୟକ୍ରମ ସମ୍ପର୍କରେ ଜନସାଧାରଣ ବହୁ ତଥ୍ୟ ଅକ୍ଲେଶରେ ଜାଣିବାର ସୁଯୋଗ ପାଆନ୍ତେ । ତେଣୁ ମତଗତ ଭାବେ ସରକାରଙ୍କର କୃଷି, ଶିଳ୍ପ, ବନ, ଜନସ୍ୱାସ୍ଥ୍ୟ, ପରିବାର ନିୟନ୍ତ୍ରଣ, ମତ୍ସ୍ୟ ଚାଷ, ଋଣ ଦେଉଥିବା ସଂସ୍ଥା ଆଦି ଯୋଜନା ସହ ସମ୍ପୃକ୍ତ ଅନ୍ୟାନ୍ୟ ବିଭାଗ ମାନ ଲକ୍ଷ୍ମୀପୂଜା ସମୟରେ ପ୍ରଦର୍ଶନୀ ମଣ୍ଡପ ମାନ ଖୋଲିବାକୁ ଆଗଭର ହେବା ଉଚିତ । ଓଡ଼ିଶା ସରକାରଙ୍କର ପ୍ରଚାର ଉଦ୍ଦେଶ୍ୟରେ ପ୍ରତ୍ୟେକ ମାସରେ ପ୍ରକାଶ ପାଉଥିବା ଉତ୍କଳ ପ୍ରସଙ୍ଗ ଏକ ସ୍ୱତନ୍ତ୍ର ସଂସ୍କରଣ ଢେଙ୍କାନାଳର ଲକ୍ଷ୍ମୀପୂଜାକୁ ଆଧାରିତ କରି ପ୍ରକାଶ ପାଇବା ଉଚିତ । ରଥଯାତ୍ରା, ସ୍ୱାଧୀନତା ଦିବସ, ଜନଗଣତନ୍ତ୍ର ଦିବସ ପ୍ରଭୃତିରେ ଉତ୍କଳ ପ୍ରସଙ୍ଗର ବିଶେଷାଙ୍କ ପ୍ରକାଶ ପାଉଅଛି ।

ଆଶା କରଯାଏ । ଢେଙ୍କାନାଳର ମଙ୍ଗଳ କଲ୍ଭ ବ୍ଲକ ପ୍ରତିନିଧି ମାନେ ଏବଂ ଜିଲ୍ଲା କର୍ତ୍ତୃପକ୍ଷ ଏଥିପ୍ରତି ବିଶେଷ ଦୃଷ୍ଟି ଦେଇ ଆଗାମୀ ବର୍ଷ ମାନଙ୍କରେ ଢେଙ୍କାନାଳ ଲକ୍ଷ୍ମୀପୂଜାକୁ ଆସୁଥିବା ଆଗନ୍ତୁକ ତଥା ବାସିନ୍ଦା ମାନଙ୍କର ଜ୍ଞାନ ଆହରଣ ସୁଯୋଗ ପାଇଁ ବ୍ୟବସ୍ଥା କରିବେ ।

• ଲକ୍ଷ୍ମୀ ବଜାରର ବା: ସାମଲ ଗଜଲକ୍ଷ୍ମୀ ଗୁଡ଼ାଖୁ ଦୋକାନ ସାମନାରେ ପ୍ରତ୍ୟେକ ବର୍ଷ ଲକ୍ଷ୍ମୀପୂଜା ସମୟରେ ବିଭିନ୍ନ ପ୍ରକାର ମୂର୍ତ୍ତି ବା ନାଚ ଗୀତର ଆୟୋଜନ ୧୯୭୦ ମସିହାରୁ ଆରମ୍ଭ ହୋଇ ଦର୍ଶକ ମାନଙ୍କୁ ତାହା ବିଶେଷ ଭାବରେ ଆକୃଷ୍ଟ କରୁଅଛି । ସେଥି ମଧ୍ୟରୁ କେଉଁ ବର୍ଷ ଦଶ ମୁଣ୍ଡ ରାବଣ, କେବେ ଶୂଲୁ ପିଉଲା ନାଚ, ବା ଗୋଟିପୁଅ ନାଚ ବା ଜଗନ୍ନାଥ ମୂର୍ତ୍ତି ପ୍ରଭୃତି ପ୍ରଧାନ । ଉକ୍ତ ସ୍ଥାନରେ ମହାଲକ୍ଷ୍ମୀଙ୍କର କୌଣସି ମୂର୍ତ୍ତି ନହେଉ ଥିଲେ ମଧ୍ୟ ଏହା ଦର୍ଶକ ମାନଙ୍କୁ ସର୍ବାଧିକ ଆମୋଦ ଦେବାର ଗୌରବ ସର୍ବଦା ରକ୍ଷାକରି ବେଶ୍ ଜନପ୍ରିୟ ହୋଇଥିବାର ଉପଲବ୍ଧି ହୁଏ ।

୧୯୬୫ ମସିହାକୁ ମିନା ବଜାରର ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନର ସଭାପତି ଶ୍ରୀ ନଟବର ଦେବତାଙ୍କର ସାହାଯ୍ୟ ଓ ପ୍ରଚେଷ୍ଟାରେ ଗୋଟିଏ ସମ୍ପୂର୍ଣ୍ଣ ତାରକସି ଗୃହ ମେଢ଼ "ମଉଡ଼ମଣି ଗଜଲକ୍ଷ୍ମୀ ପ୍ରତି-ଷ୍ଠାନରେ" ଶୋଭା ପାଉଥିଲା । ଫଳରେ ଏହା ମଉଡ଼ମଣି ନାମକୁ ସାର୍ଥକ କରୁଥିଲା । ଦେଶରେ ଜରୁରୀ କାଳୀନ ସମୟରେ ଯେତେବେଳେ ଭାରତର ସମ୍ବିଧାନ ପ୍ରଦତ୍ତ ମୌଳିକ ଅଧିକାରକୁ କ୍ଷୁର୍ଣ୍ଣ କରାଯାଇ ନାଗରିକ ମାନଙ୍କର ସ୍ୱାଧୀନତା ସଙ୍କୁଚିତ କରାଯାଇଥିଲା ଓ ଦେଶରେ ପୋଲିସ ରାଜ ବଳବତ୍ତର ରହିଥିଲା । ସେତେବେଳେ ତା ୨ । ୧୧ । ୧୯୭୬ ରାତ୍ରି ମଧ୍ୟ ଭାଗରେ ସମୁଦାୟ ଗୃହ ମେଢ଼ଟି ମିନା ବଜାର ମହାଲକ୍ଷ୍ମୀ ପ୍ରତିଷ୍ଠାନର ସଭାପତି ଶ୍ରୀ ନଟବର ଦେବତାଙ୍କ ଘରୁ ଅତି ଆଶ୍ଚର୍ଯ୍ୟ ଜନକ ଭାବରେ ଚୋରି ହୋଇଗଲା । ଉକ୍ତ ଗୃହ ମେଢ଼ର ଓଜନ ପ୍ରାୟ ୪୫ କେ.ଜି. ଥିବାର କୁହାଯାଏ ଏବଂ ଏହାର ବର୍ତ୍ତମାନର ଆନୁମାନିକ ମୂଲ୍ୟ ପ୍ରାୟ ପାଞ୍ଚ ଲକ୍ଷ ଟଙ୍କା ହେବ । କଟକର ଚୌଧୁରୀ

ବଜାର ଦୁର୍ଗା ମଣ୍ଡପ ମେଢକୁ ଛାଡ଼ିଦେଲେ ଏପରି ତାରକସୀ ଶୃଙ୍ଗ ମେଢ ଦେଶରେ ଅନ୍ୟତ୍ର କେଉଁଠି ଥିବାର ଜଣା ନାହିଁ । ଏହି ପରି ଏକ ମୂଲ୍ୟବାନ ଦୁର୍ଲ୍ଲଭ ବସ୍ତୁର ଚୋର ରହସ୍ୟ ପୋଲିସ ବିଭାଗ ବର୍ତ୍ତମାନ ସୁଦ୍ଧା ଉଦଘାଟନ କରିବାକୁ ସକ୍ଷମ ହୋଇ ପାରିନାହାନ୍ତି । ଫଳତଃ ପୋଲିସ ବିଭାଗର ଏହି ଅପାରଗତା ତଥା କାରୁସିକାଳିନ ସମୟକୁ ଢେଙ୍କାନାଳ ବାସୀ ଭୁଲି ପାରୁନାହାନ୍ତି । ଢେଙ୍କାନାଳର ଏହି "ଶୃଙ୍ଗ ମେଢ଼" ଚୋରି ମିନା ବଜାର ବାସୀନ୍ଦାଙ୍କ ସମେତ ଢେଙ୍କାନାଳ ବାସୀଙ୍କୁ ଘୋର ବେଦନା ଦେଇଅଛି ଏବଂ ପୁନଶ୍ଚ ଏକ ନୂତନ ଶୃଙ୍ଗ ମେଢ଼ ତିଆରି କରିବା ଲାଗି ମିନା ବଜାର ବାସୀନ୍ଦା ମାନେ ଯୋଜନା କରୁଥିବାର ଜଣାଯାଏ ।

ନଥି କମ୍ବା ଯୋଗ ଜୁଲରୁ ରାଧାଷ୍ଟମୀ ଦିନ ବା ଅନନ୍ତ ବ୍ରତ ତଥା ଅନ୍ୟ କୌଣସି ଶୁଭ ଦିନରେ ମାଟି ଆଣି ମହାଲକ୍ଷ୍ମୀ ପୂଜାର ଶୁଭାରମ୍ଭ କରିବା ଢେଙ୍କାନାଳ ଲକ୍ଷ୍ମୀପୂଜା ପ୍ରତିଷ୍ଠାନ ମାନଙ୍କର ଏକ ବିଶେଷ ବିଧି । ଉକ୍ତ ମାଟିକୁ ଖୁବ୍ ଆଡ଼ମ୍ବରପୂର୍ଣ୍ଣ ଭାବରେ ପୂଜାପାଠ ପୂର୍ବକ ବାଦ୍ୟ ଧ୍ୱଜ ବିଜୟ ପତାକା ମଣ୍ଡିତ ଶୋଭାଯାତ୍ରାରେ ପୂଜା ଆସ୍ଥାନ ମାନଙ୍କୁ ଅଣାଯାଇ ଉକ୍ତ ମାଟିକୁ ଲକ୍ଷ୍ମୀପୂଜା ପର୍ଯ୍ୟନ୍ତ ପ୍ରତ୍ୟହ ପୂଜା କରାଯାଇଥାଏ । ଏହି ମାଟି ଆଣିବା ପଛରେ ତାତ୍ତ୍ୱିକ ଭାବନା ଯାହା ଥାଉନା କାହିଁକି ଲକ୍ଷ୍ମୀ ଠାକୁରାଣୀଙ୍କର ପୂଜା ପାଳନର ଶୁଭବାର୍ତ୍ତା ଏହି ବିଧି ବଜାର ମାନଙ୍କରେ ସର୍ବ ପ୍ରଥମେ ପ୍ରଚାର କରିଥାଏ ।

ସାଧାରଣତଃ ପଞ୍ଜିକାର ମାନେ ମାଣବସା ଗୁରୁବାର ଦିନ ଲକ୍ଷ୍ମୀ ଠାକୁରାଣୀଙ୍କ ପୂଜାକୁ "ମହାଲକ୍ଷ୍ମୀ ପୂଜା" ବୋଲି କହିଥାନ୍ତି କୁମାର ପୂର୍ଣ୍ଣିମା ତିଥିରେ ହେଉଥିବା ଲକ୍ଷ୍ମୀ ଠାକୁରାଣୀଙ୍କର ପୂଜାକୁ "ଗଜଲକ୍ଷ୍ମୀ" ପୂଜା ନାମରେ ନାମିତ କରିଥାନ୍ତି କିନ୍ତୁ ଢେଙ୍କା-ନାଳରେ ହେଉଥିବା ଲକ୍ଷ୍ମୀପୂଜା ଯଦିଓ କୁମାର ପୂର୍ଣ୍ଣିମା ତିଥିରେ ପାଳିତ ହୁଏ, ଅର୍ଥାତ୍ ଏହି ପୂଜାକୁ କେତେକ ପୂଜା ପ୍ରତିଷ୍ଠାନ "ରାଜଲକ୍ଷ୍ମୀ ପୂଜା" କିମ୍ବା "ସୌଭାଗ୍ୟ ଲକ୍ଷ୍ମୀ ପୂଜା" କିମ୍ବା "ଅନ୍ନପୂର୍ଣ୍ଣା

ପୂଜା'' ନାମରେ ନାମିତ କରୁଥିବା ଦୃଷ୍ଟିକୁ ଅଧେ । . ଜନସାଧାରଣ-ରେ ଏହି ପୂଜା ''ଲକ୍ଷ୍ମୀ ପୂଜା'' କିମ୍ବା ''ମହାଲକ୍ଷ୍ମୀ ପୂଜା'' ନାମରେ ସର୍ବତ୍ର ଆଦୃତ । ସେହିପରି ଭସାଣି ଶୋଭାଯାତ୍ରାରେ ଲକ୍ଷ୍ମୀ ଠାକୁରାଣୀ ମାନଙ୍କର ମୂର୍ତ୍ତିକୁ ''ମେଢ଼ ଶୋଭାଯାତ୍ରା'' ନାମରେ ଜନସାଧାରଣ କହୁଥିବା ଦୃଷ୍ଟିରୁ ଉକ୍ତ ଲେଖାରେ ମହାଲକ୍ଷ୍ମୀ ପୂଜା ଓ ମେଢ ଶୋଭାଯାତ୍ରା ନାମକୁ ସ୍ଥଳ ବିଶେଷରେ ଉଲ୍ଲେଖ କରାଯାଇଅଛି ।

ବହୁ ସମୟରେ ବଜାରର ସୀମା ସରହଦ ଏବଂ ଲକ୍ଷ୍ମୀପୂଜା ଚାନ୍ଦା ଆଦାୟକୁ କେନ୍ଦ୍ରକରି ସାଇ ସାଇ ମଧ୍ୟରେ ବିବାଦ ମାନ ଗଢି ଉଠି ଅଶାନ୍ତ ବାତାବରଣ ସୃଷ୍ଟିହୋଇ ଶାନ୍ତି ଭଙ୍ଗର ଆଶଙ୍କା ସହରର କେତେକ ଅଞ୍ଚଳକୁ ପରିବ୍ୟାପ୍ତ ହୋଇଥାଏ । ଫଳତଃ ସେହି ସବୁ ଅଞ୍ଚଳ ପୋଲିସ ନିୟନ୍ତ୍ରଣ ମଧ୍ୟକୁ ଆସେ । ଏହିପରି ପରିସ୍ଥିତି ଅତୀତରେ ଘଟିଥିବାରୁ ଶୋଭାଯାତ୍ରାର ଗତିପଥ ନିୟନ୍ତ୍ରଣ କରିବାର ଦୃଷ୍ଟାନ୍ତ ଅଛି । ସାମାଜିକ ମୂଲ୍ୟବୋଧ ପ୍ରତି ଗୁରୁତ୍ୱ ନଦେଇ ଭାବ ପ୍ରବଣତାର ବଶବର୍ତ୍ତୀ ହୋଇ ବଜାର ବାସିନ୍ଦା ମାନେ ଏହି ସବୁ କାର୍ଯ୍ୟରେ ମାତି ଯାଉଥିବାର ଦେଖାଯାଏ । ସୁତରାଂ ଶୋଭାଯାତ୍ରା ତଥା ଲକ୍ଷ୍ମୀପୂଜା ଉତ୍ସବର ଆନନ୍ଦ ଉଲ୍ଲାସରେ ଭଟ୍ଟା ପଡ଼ି ନିରାନନ୍ଦ ଓ ଦୁଃଖରେ ତାହା ପରିଣତ ହୁଏ । ବେଳେ ବେଳେ ଏହା ମର୍ମନ୍ତୁଦ ଓ ବେଦନା ଦାୟକ ଘଟଣା ମଧ୍ୟ ସୃଷ୍ଟି କରେ । ପୂଜା କମିଟି ଉଦ୍‌ଯୋଗୀ ମାନେ ଯଦି ସଯତ ତଥା ନିଜର କାର୍ଯ୍ୟକଳାପ ପ୍ରତି ସଜାଗ ହୁଅନ୍ତେ ତାହା ହେଲେ ଶୋଭାଯାତ୍ରା ବା ସୀମା ବିବାଦ କେବେହେଁ ଏଥିରେ ପ୍ରତିବନ୍ଧକ ସୃଷ୍ଟି କରନ୍ତା ନାହିଁ । ଯାହାହେଉ ମା' ଲକ୍ଷ୍ମୀଙ୍କର ଅପାର କରୁଣାରୁ ଏହିପରି ପରିସ୍ଥିତିକୁ ସହରବାସୀ ମାନେ ବର୍ତ୍ତମାନ ଦୂରେଇ ଦେଇ ପାରିଛନ୍ତି ।

ଚଳିତ ବର୍ଷ ଯୁଦ୍ଧା ସହରରେ ୩୧ ଗୋଟି ପୂଜା ମଣ୍ଡପରେ ମନୋଜ୍ଞ ଓ ଆକର୍ଷଣୀୟ ମୂର୍ତ୍ତି ଏବଂ ତୋରଣ ମାନ ତିଆରି ହେବା ଫଳରେ ପ୍ରଚୁର ଅର୍ଥ ବ୍ୟୟିତ ହେଉଅଛି । ଏହି ବିପୁଳ ଅର୍ଥ ବ୍ୟୟର

ପୃଷ୍ଠ ଭୂମିରେ ଅଛି ସାମାନ୍ୟ ପ୍ରଶଂସା ବା ନିଜ ନିଜ ସାହିର ଗୌରବ
ଦେଖାଇ ଦେବାର ପ୍ରବୃତ୍ତି ।

ଢେଙ୍କାନାଳରେ ବର୍ତ୍ତମାନ ମହାଲକ୍ଷ୍ମୀ ପୂଜା ପ୍ରାୟ ୧୧ ଦିନ ଧରି ମହା ଆଡମ୍ବରରେ ଓ ସାଜସଜ୍ଜା ମଧ୍ୟରେ ପାଳିତ ହୋଇ ଉତ୍କଳର ପର୍ବପର୍ବାଣି ମଧ୍ୟରେ ପ୍ରାଧାନ୍ୟ ଲାଭ କରିପାରିଅଛି । ଏଥିରୁ ସତ୍ତ୍ୱେ ଆଜିର ସମାଜରେ ଲୋକ ମାନଙ୍କ ମଧ୍ୟରେ ଧର୍ମ ଭାବନା ଗୌଣହୋଇ ପଡ଼ୁଛି । ସମସ୍ତ ପାରମ୍ପରିକ ଉତ୍ସବ ଓ ପର୍ବପର୍ବାଣି ପାଳନରେ ଆନ୍ତରିକତା ଅପେକ୍ଷା ବାହ୍ୟ ଆଡମ୍ବର ବିଶେଷ ଭାବେ ଅନୁଭବ କରାଯାଉଅଛି । ମହାଲକ୍ଷ୍ମୀଙ୍କ ପୂଜାରେ ଭକ୍ତିଭାବ କ୍ରମେ ଲୋପପାଇ ଏହା ପ୍ରାଚୁର୍ଯ୍ୟ, ବିଳାସ ଓ ଅହଂକାର ପ୍ରଦର୍ଶନୀର ସ୍ଥଳ ହୋଇପଡ଼ୁଛି । ସାଂସ୍କୃତିକ ଉତ୍ସବରେ ଅପସଂସ୍କୃତିର ପ୍ରବେଶ, ଏହାର ମହତ୍ତ୍ୱ, ଆନନ୍ଦ, ଉଲ୍ଲାସକୁ ନଷ୍ଟ୍ରଭ କରି ଦେଉଅଛି । ସତେ ଯେପରି ମନରେ ସରସତା ଆଣି ପାରୁନାହିଁ । ପ୍ରତିବର୍ଷ ସାଜସଜ୍ଜା ଓ ଆମୋଦ ପ୍ରମୋଦର ଖର୍ଚ୍ଚ ବଢ଼ି ବଢ଼ି ଚାଲିଛି । ବାସିନ୍ଦା ମାନଙ୍କ ଠାରୁ ଅର୍ଥ ବା ଚାନ୍ଦା ଆଦାୟର ଅତ୍ୟଧିକ ଚାପ ବହୁ ସମୟରେ ପଡ଼ୁଥିବା ଫଳରେ ମହାଲକ୍ଷ୍ମୀ ପୂଜାର ଆକର୍ଷଣ ସାଧାରଣ ମଧ୍ୟବିତ୍ତ ତଥା ଦରିଦ୍ର ପରିବାର ପକ୍ଷରେ ଏକ ଆତଙ୍କ ରୂପେ ଦେଖା ଦେଲାଣି । ଘରେ ଘରେ, ସାହି ସାହି ମଧ୍ୟରେ ଅଶାନ୍ତି ଅସନ୍ତୋଷ ଲାଗି ରହୁଛି । ଆମର ହିନ୍ଦୁ ସଂସ୍କୃତି ତ୍ୟାଗ ଓ ତପସ୍ୟାର ସଂସ୍କୃତି ହୋଇଥିଲେ ମଧ୍ୟ ଏହା ବର୍ତ୍ତମାନ ବିଳାସର ସଂସ୍କୃତି ବୋଲି ପ୍ରତିପାଦିତ ହେବାକୁ ଯାଉଛି । ଶୁଦ୍ଧ, ସରଳ ଓ ନିଷ୍ଠାପରତା ଲୋପ ହୋଇ ଧର୍ମକୁ ଆଶ୍ରାରେ ମାତ୍ର ପୂଜା କରିବାର ଛଳନା କେତେକ ସ୍ଥଳରେ ଦେଖା ଦେଉଅଛି । ଏଣୁ ଧର୍ମ ଦର୍ଶନ ଓ ସଂସ୍କୃତିକୁ ଆଖି ଆଗରେ ରଖି ସାମାଜିକ ଭାରସାମ୍ୟ ରକ୍ଷା ସହ ସୁସ୍ଥ ବାତାବରଣ ମଧ୍ୟରେ ପୂଜା କରିବା ଏକାନ୍ତ ବିଧେୟ ହେଲାଣି । ତାହା ନହେଲେ ଜାତି ଓ ଦେଶର ପ୍ରକୃତ ବିକାଶ ଅସମ୍ଭବ । ମା ଜଗତ୍‌ଜନନୀ ଲକ୍ଷ୍ମୀ ଠାକୁରାଣୀ ଆମ୍ଭ ମାନଙ୍କ ମନରେ ଏହି ନୈତିକତାର ମୂଲ୍ୟ ବୋଧ ଭରି ଦିଅନ୍ତୁ । ଏହାହିଁ ନିବେଦନ ।

"ନମୋ ବିଶ୍ୱରୂପସ୍ୟ ଭାର୍ଯ୍ୟାସି ପଦ୍ମେ ପଦ୍ମାଳୟେ ଶୁଭେ
ସର୍ବତଃ ପାହିମାଂ ମାତଃ ଲକ୍ଷ୍ମୀ ଦେବୀ ନମୋଽସ୍ତୁତେ।"

# ଢେଙ୍କାନାଳ ମହାଲକ୍ଷ୍ମୀ ମିଳିତ ପୂଜା କମିଟିର

## ସଭାପତି ତାଲିକା

| | | |
|---|---|---|
| ୧୯୪୬ ରୁ ୧୯୫୩ | ଶ୍ରୀ ନଟବର ଦେବତା | ସଭାପତି |
| ୧୯୫୪ ରୁ ୧୯୫୯ | ସ୍ୱର୍ଗୀୟ ରାଜା ଶଙ୍କରପ୍ରତାପ ମହୀନ୍ଦ୍ର ବାହାଦୂର | ସଭାପତି |
| ୧୯୬୦ ରୁ ୧୯୬୪ | ସ୍ୱର୍ଗୀୟ ରାଜା ଶଙ୍କରପ୍ରତାପ ମହେନ୍ଦ୍ର ବାହାଦୂର | ମୁଖ୍ୟ ସେବାଧକ୍ଷ |
| ୧୯୬୫ | ରାଜମାତା ରତ୍ନପ୍ରଭାଦେବୀ, | ମୁଖ୍ୟସେବାଧକ୍ଷା |
| ୧୯୬୬ ଓ ୧୯୬୭ | ସ୍ୱର୍ଗୀୟ ମହାଦେବ ରାମ, | ସଭାପତି |
| ୧୯୬୮ | ମେଜର କାମାକ୍ଷା ପ୍ରସାଦ ସିଂହଦେଓ, | ସଭାପତି |
| ୧୯୬୯ ଓ ୧୯୭୩ | ସ୍ୱର୍ଗୀୟ ମହାଦେବ ରାମ, | ସଭାପତି |
| ୧୯୭୪ | କବିରାଜ ମଧୁସୂଦନ ମିଶ୍ର, | ସଭାପତି |
| ୧୯୭୫ | ଶ୍ରୀ ଲଳିତ ମୋହନ ନନ୍ଦ, | ସଭାପତି |
| ୧୯୭୬ | ଶ୍ରୀ ନଟବର ଦେବତା, | ସଭାପତି |
| ୧୯୭୭ ଓ ୧୯୭୮ | ଶ୍ରୀ ବିଶ୍ୱେଶ୍ୱର ଭୂଞା, | ସଭାପତି |
| ୧୯୭୯ ରୁ ୧୯୮୧ | ଶ୍ରୀ କୁଞ୍ଜବିହାରୀ ମିଶ୍ର, | ସଭାପତି |
| ୧୯୮୨ ଓ ୧୯୮୩ | ଶ୍ରୀ ନବୀନ ଚନ୍ଦ୍ର ନାରାୟଣ ଦାସ | ସଭାପତି |
| ୧୯୮୪ | ଶ୍ରୀ ଅନନ୍ତ ଚରଣ ସାମଲ | ସଭାପତି |
| ୧୯୮୫ | ଶ୍ରୀ ସଚ୍ଚିଦାନନ୍ଦ ଦାଶ, | ସଭାପତି |
| ୧୯୮୬ | ଶ୍ରୀ ଆଶୁତୋଷ ଦାସଗୁପ୍ତ, | ସଭାପତି |

---

ଏହି ପ୍ରବନ୍ଧରେ ସନ୍ନିବେଶିତ ତାରିଖ, ମସିହା, ମେଢମାନଙ୍କର କ୍ରମିକ ନମ୍ବର ଏବଂ ମିଳିତ ପୂଜା କମିଟିର ସଭାପତି ମାନଙ୍କର ନାମ ଇତ୍ୟାଦି ଶ୍ରୀ ନଟବର ଦେବତାଙ୍କ ତତ୍ତ୍ୱାବଧାନରେ ସୁରକ୍ଷିତ ମିଳିତ ମହାଲକ୍ଷ୍ମୀ ପୂଜା କମିଟିର ବିବରଣୀ ପୁସ୍ତିକା ଓ କେତେକ ଗୁରୁତ୍ୱପୂର୍ଣ୍ଣ କାଗଜପତ୍ରରୁ ପ୍ରାପ୍ତ ତଥ୍ୟ ଏବଂ ଅତୀତରେ ମହାଲକ୍ଷ୍ମୀ ପୂଜା ସହ ସମ୍ପୃକ୍ତ କେତେକ ବରିଷ୍ଠ ବୟୋବୃଦ୍ଧ ବ୍ୟକ୍ତିଙ୍କର ସ୍ମୃତି ମନ୍ଥନରୁ ଲବ୍ଧ ତଥ୍ୟକୁ ଆଧାର କରି ପ୍ରସ୍ତୁତ କରାଯାଇଅଛି ।



# ବନ୍ଦନା

ନମସ୍ତେ କମଲା ପାଙ୍ଗ ନନ୍ଥ ସଙ୍କାଶଚକ୍ଷୁଷେ ।
ଶ୍ରୀବତ୍ସକୌସ୍ତୁଭଭାସି ମନୋଜ୍ଞମ୍ଭୁଟ ବକ୍ଷସେ ॥
ଯତ୍ପାଦପଙ୍କଜ ଦ୍ୱନ୍ଦ୍ୱ ସଂଶୟୈଶ୍ୱର୍ଯ୍ୟଶାଳିନୀ ।
ଶ୍ରୀଃ ସଂଶ୍ରିତାନେକ ପୃଥଗୈଶ୍ୱର୍ଯ୍ୟଦାୟିନୀ ॥
ଯା ପରାପର ସନ୍ତିନ୍ନା ପ୍ରକୃତସ୍ତେ ସିସୃକ୍ଷୟା ।
ନିର୍ବିକାରଂ ପରଂବ୍ରହ୍ମ ବିକାର ମସୃଜତ ସା ॥
ଜଗଦଲ୍ଲକ୍ଷଣ ସମ୍ପୂର୍ଣ୍ଣାଂ ଲକ୍ଷିତାଂ ଶୁଭ ଲକ୍ଷଣୈଃ ।
ଲକ୍ଷ୍ମୀ ଶୌରସି ନିତ୍ୟସ୍ଥାଂ ଲକ୍ଷ୍ମୀ ତାଂ ପ୍ରଣମାମ୍ୟହମ୍ ॥

(ସ୍କନ୍ଦ ପୁରାଣ)

କମଳାଙ୍କ ଅପାଙ୍ଗ ସଦୃଶରେ ଯାହାଙ୍କର ନୟନ ନୟନ ଶୋଭିତ, ଯାହାଙ୍କର ବକ୍ଷସ୍ଥଳ ଶ୍ରୀବତ୍ସ ଚିହ୍ନିତ କୌସ୍ତୁଭମଣି ପ୍ରଦୀପ୍ତ, ଯାହାଙ୍କର ପାଦପଦ୍ମ ଦ୍ୱୟ ଆଶ୍ରୟ କରି ଲକ୍ଷ୍ମୀ ଦେବୀ ଐଶ୍ୱର୍ଯ୍ୟ ଶାଳିନୀ ହୋଇ ଆଶ୍ରିତ ବ୍ୟକ୍ତି ମାନଙ୍କୁ ପୃଥକ ପୃଥକ ଐଶ୍ୱର୍ଯ୍ୟ ଦାନ କରି ପାରନ୍ତି । ଯାହାଙ୍କର ସୃଷ୍ଟି କାର୍ଯ୍ୟରେ ପ୍ରବୃତ୍ତି ହେଲେ ପରାପ୍ରକୃତି ପର (ପୁରୁଷ) ଭିନ୍ନା ପ୍ରତୀୟମାନ ହୁଅନ୍ତି । ସେହି ପ୍ରକୃତି ନିର୍ବିକାର ବ୍ରହ୍ମଙ୍କର ବିକାର ସମ୍ପାଦନ କରନ୍ତି ଏବଂ ଜଗତ ଲକ୍ଷଣରେ ସମ୍ପୂର୍ଣ୍ଣ ଓ ଶୁଭ ଲକ୍ଷଣ ଦ୍ୱାରା ଲକ୍ଷିତା, ଶ୍ରୀ ନାରାୟଣଙ୍କର ବକ୍ଷ ସ୍ଥଳେ ସର୍ବଦା ଅଧିଷ୍ଠାୟିନୀ, ସେହି ଲକ୍ଷ୍ମୀ ଦେବୀଙ୍କୁ ମୁଁ ପ୍ରଣାମ କରୁଅଛି ।

—o—



ମହାବୀର ବଜାର- ଲକ୍ଷ୍ମୀପ୍ରତିମା
୧୯୮୬



ମହାବୀର ବଜାର– ତୋରଣ–୧୯୮୬

# ମୋ ସ୍ମୃତିରେ ଗୁଞ୍ଜଆନାଳ ମହାଲକ୍ଷ୍ମୀ ପୂଜା

ଶ୍ରୀ ନଳିନୀ କୁମାର ତ୍ରିପାଠୀ

ଢେଙ୍କାନାଳ ତଥା ଉତ୍କଳରେ ବହୁ ପର୍ବପର୍ବାଣି ଯୁଗେ ଯୁଗେ ପାଳିତ ହୋଇ ଆସୁଅଛି । ବିଭିନ୍ନ ଋତୁର ପରିବେଶ ଅନୁଯାୟୀ ପର୍ବ ପର୍ବାଣି ଗୁଡ଼ିକ ପରିକଳ୍ପିତ ହୋଇଥାଏ । ସାଧାରଣତଃ ଧର୍ମ ଓ ପୌରାଣିକ ଉପାଖ୍ୟାନକୁ ଆଧାର କରି ସେ ସବୁ ଗଢ଼ି ଉଠିଛନ୍ତି । କର୍ମକ୍ଳାନ୍ତ ଓ ଧାରାକ୍ରାନ୍ତ ମାନବ ମନକୁ ଆମୋଦ ପ୍ରମୋଦ ମାଧ୍ୟମରେ ନୂତନ ପ୍ରେରଣା ଯୋଗାଇବା ପାଇଁ ଏହି ପର୍ବପର୍ବାଣି ଗୁଡ଼ିକ ଉଦ୍ଦିଷ୍ଟ ହୋଇଥିବାର (ଲୌକିକ ଦୃଷ୍ଟିରୁ) ଅଭିପ୍ରେତ ହେଲେହେଁ ସେ ସବୁର ଗୋଟିଏ ତାତ୍ତ୍ୱିକ ମୂଲ୍ୟବୋଧ ମଧ୍ୟ ରହିଅଛି । ଉତ୍କଳରେ ପ୍ରଚଳିତ ବହୁ ପର୍ବପର୍ବାଣି ମଧ୍ୟରୁ ମହାଲକ୍ଷ୍ମୀ ପୂଜା ଅନ୍ୟତମ । ଏହି ମହାଲକ୍ଷ୍ମୀଙ୍କୁ ନେଇ ବହୁ ପ୍ରକାର ପର୍ବପର୍ବାଣି ବର୍ଷର ବିଭିନ୍ନ ସମୟରେ ଉତ୍କଳରେ ଅନୁଷ୍ଠିତ ହୋଇଥାଏ । ମହାଲକ୍ଷ୍ମୀଙ୍କୁ ନେଇ ଗଢ଼ି ଉଠିଥିବାର ପୂଜାପର୍ବ ମାନଙ୍କ ମଧ୍ୟରେ କୁମାରୋତ୍ସବ ବା କୁମାର ପୂର୍ଣ୍ଣିମା ଦିନର ମହାଲକ୍ଷ୍ମୀ ପୂଜା ସର୍ବପ୍ରଧାନ ବୋଲି ବିବେଚିତ ହୁଏ । ଏହି ତିଥିର ଜଗତମାତା ଲକ୍ଷ୍ମୀଦେବୀଙ୍କର ଜନ୍ମ ଦିନ ବୋଲି ପୁରାଣକାର ମାନଙ୍କର ମତ । ତେଣୁ ସୌଭାଗ୍ୟ ସମ୍ପଦର ଅଧିଷ୍ଠାତ୍ରୀ ଦେବୀ ମହାଲକ୍ଷ୍ମୀଙ୍କୁ ଏହି ପୂର୍ଣ୍ଣିମାରେ ପୂଜା ଆରାଧନା କରିବା ବିଧେୟ ।

ଢେଙ୍କାନାଳରେ ଲକ୍ଷ୍ମୀଦେବୀଙ୍କର ଆରାଧନା ଓ ବନ୍ଦାପନା ମଧ୍ୟରେ ଉତ୍କଳର ଅନ୍ୟାନ୍ୟ ଅଞ୍ଚଳ ପରି କୁମାର ପୂର୍ଣ୍ଣିମା ଦିନ ଘରେ-

ଘରେ ପାଳିତ ହୋଇଥାଏ । ମୃଣ୍ମୟମୂର୍ତ୍ତି ମାଧ୍ୟମରେ ମହାଲକ୍ଷ୍ମୀ ପୂଜା ଢେଙ୍କାନାଳ ଗଡ଼ରେ କେବେ ଏବଂ କେଉଁ ପରିସ୍ଥିତିରେ ଆରମ୍ଭ ହେଲା, ତାହା ମୋର ସ୍ମରଣ ହେଉନାହିଁ । ଯେତେଦୂର ମନେପଡ଼େ ୧୯୪୮ ଜାନୁୟାରୀ ମାସରେ ଓଡ଼ିଶା ପ୍ରଦେଶ ସହ ଢେଙ୍କାନାଳ ରାଜ୍ୟ ମିଶ୍ରଣ ବେଳକୁ ଢେଙ୍କାନାଳ ଗଡ଼ରେ ମହାଲକ୍ଷ୍ମୀଙ୍କର ମୃଣ୍ମୟମୂର୍ତ୍ତି ପୂଜା ଆରାଧନା ୨।୩ ଗୋଟି ସ୍ଥାନରେ ବେଶ ଆଡ଼ମ୍ବର ପୂର୍ଣ୍ଣଭାବରେ ପାଳିତ ହେଉଥିଲା ।

ଢେଙ୍କାନାଳର ପୌରସଭାର ନିର୍ବାଚନ ୧୯୫୨ରେ ପ୍ରଥମ ଥର ପାଇଁ ହେଲା ଏବଂ ମୁଁ ଦୁଇନମ୍ବର ୱାର୍ଡ଼ ଗୁଡ଼ଆନାଳି ସାହିର(ଏକ ଅଂଶ) ର ପୌରସଭା ସଦସ୍ୟ ଭାବେ ନିର୍ବାଚିତ ହେଲି । ବିଭିନ୍ନ ସାହିର ପୂଜା ପ୍ରତିଷ୍ଠାନ ସହ ପୌର ପରିଷଦର ସଭ୍ୟ ବନ୍ଧୁମାନେ ସେତେବେଳକୁ ସଂପୃକ୍ତ ହୋଇ ଯାଇଥାଆନ୍ତି । ୧୯୫୫ ସେପ୍ଟେମ୍ବର ମାସର ଏକ ସନ୍ଧ୍ୟାରେ ବଜାରକୁ ବୁଲିଯାଇ ଅନ୍ୟତମ ପୌରସଭା ସଦସ୍ୟ ବନ୍ଧୁ ଶ୍ରୀ ନଟବର ଦେବତାଙ୍କ ଦୋକାନକୁ ଗଲି ଏବଂ ସେଠାରେ ବସି କଥାବାର୍ତ୍ତା ମାଧ୍ୟମରେ ଜାଣିଲି, ତାଙ୍କ ସାହିରୁ ମହାଲକ୍ଷ୍ମୀ ପୂଜା ଆୟୋଜନ ନେଇ ସେ ବ୍ୟସ୍ତ ଅଛନ୍ତି । ସେତେବେଳକୁ ସହର ମଧ୍ୟରେ ପ୍ରାୟ ୭।୮ଟି ଜାଗାରେ ମହାଲକ୍ଷ୍ମୀ ପୂଜା ହେଉଥାଏ ଏବଂ ପୂଜା ଶେଷରେ ମିଳିତ ଶୋଭାଯାତ୍ରାରେ ସମସ୍ତ ମେଢ଼ ଭସାଣି ଉତ୍ସବ ପାଳନ କରନ୍ତି । ଢେଙ୍କାନାଳ ରାଜାସାହେବ ସ୍ୱର୍ଗୀୟ ଶଙ୍କରପ୍ରତାପ ସିଂହଦେଓ ମହେନ୍ଦ୍ର ବାହାଦୁର ଉକ୍ତ ମେଢ଼ ମାନଙ୍କୁ ନେଇ ଗଠିତ ପୂଜା କମିଟିର ସଭାପତି ଭାବେ ସେତେବେଳକୁ ମନୋନୀତ ହୋଇ ସାରିଥାଆନ୍ତି । ମହାଲକ୍ଷ୍ମୀ ମୂର୍ତ୍ତିର ଭସାଣି ଉତ୍ସବ ଦିନ ସମସ୍ତ ମେଢ଼ ଅତି ଶୃଙ୍ଖଳା ସହିତ ଶ୍ରୀ ଦେବତାଙ୍କର ନେତୃତ୍ୱରେ ସେତେବେଳକୁ ଯାଉଥାଆନ୍ତି । ଲକ୍ଷ୍ମୀପୂଜା ସେତେବେଳକୁ ବହୁତ ଲୋକପ୍ରିୟତା ଲାଭ କରିଥାଏ । ବର୍ତ୍ତମାନ ପରି ସେତେବେଳେ ପୂଜାମଣ୍ଡପ ବା ରାସ୍ତାରେ ଆଲୋକ ସାଜସଜ୍ଜା ନଥିଲା, କିନ୍ତୁ ମେଢ଼ମାନଙ୍କରେ ବଜୁଳି ଆଲୋକ ସହ ରଙ୍ଗୀନ କାଗଜଦ୍ୱାରା ସାଜସଜ୍ଜା ବେଶ ଚମତ୍କାର ସହ ହେଉଥିଲା । ଶ୍ରୀ ଦେବତାଙ୍କ ସହ ଆଲୋଚନା ମାଧ୍ୟମରେ ଗୁଡ଼ଆନାଳି ସାହିରେ ଲକ୍ଷ୍ମୀପୂଜାର ଶୁଭାରମ୍ଭର

ପ୍ରେରଣା ପାଇଲି ଓ ତହିଁରେ ଉତ୍ସାହିତ ହୋଇ ଗୁଡିଆନାଳିର କେତେକ ବିଶିଷ୍ଟ ବ୍ୟକ୍ତି ମାନଙ୍କୁ ଏକ ବୈଠକରେ ଭେଟି ମହାଲକ୍ଷ୍ମୀ ପୂଜା ଗୁଡିଆ-ନାଳିରେ କରିବାର ପରିକଳ୍ପନାକୁ ଉପସ୍ଥାପିତ କଲି । ଆଲୋଚନା ଫଳରେ ସାହିର ବହୁସଂଖ୍ୟକ ଏଥିପ୍ରତି ଆଗ୍ରହ ପ୍ରକାଶ କଲେ । ତେଣୁ ୧୯୫୫ ରେ ଗୁଡ଼ିଆନାଳି ସାହିରେ ମହାଲକ୍ଷ୍ମୀ ପୂଜା ହେବାର ନିଷ୍ପତ୍ତି କରାଗଲା ଓ ମୁଁ ତହିଁର ସଭାପତି ହେଲି । ସହଯୋଗୀ ମୁଖ୍ୟଭାବେ ସର୍ବଶ୍ରୀ ନରେନ୍ଦ୍ର ମହାନ୍ତି, ହରିଶଙ୍କର ମିଶ୍ର, ମାଗୀ ବେହେରା, ଲମ୍ବୋଦର ପ୍ରଧାନ ନୀଳକଣ୍ଠ ପଲେଇ, ବୁଦ୍ଧିମନ୍ତ ବାରିକ, କଶୋଣି ଦାସ, ସ୍ୱର୍ଗୀୟ ଗୋବର୍ଦ୍ଧନ ରାମ ପ୍ରଭୃତି ରହିଲେ । ଗୁଡିଆନାଳି ସାହିରୁ ଚାନ୍ଦା ମାଧ୍ୟମରେ ସେ ବର୍ଷ ପ୍ରାୟ ୬୩୦୦ ଟଙ୍କା ଆଦାୟ ହୋଇଥିଲା । ପୂଜା ମଣ୍ଡପ ପାଇଁ ଏକ ଅସ୍ଥାୟୀ ଛପର ଘର ଥାନା ଆଗରେ ଥିବା ସର-କାରୀ ପଡିଆରେ ତିଆରି ହେଲା । ଉକ୍ତ ଘର ଆଗରେ ଗୁଡ଼ିଆନାଳି ସଅର ସାହି ଓ କୁମ୍ଭାର ସାହି ବାସିନ୍ଦା ମାନଙ୍କ ସହଯୋଗରେ ଏକ ଚାମୁଣ୍ଡିଆ ଡାଲଡେଣ୍ଡ ଦ୍ୱାରା ତିଆରି ହେଲା । ସେ ବର୍ଷ ପୂଜା ବୋଧ-ହୁଏ ୭/୮ ଦିନ ଯାଏ ହୋଇଥିଲା । ଭସାଣି ଉତ୍ସବରେ ଯୋଗଦାନ ପାଇଁ ମିଳିତ ପୂଜା କମିଟିକୁ ଦରଖାସ୍ତ କରାଗଲା ଓ ଗୁଡିଆନାଳି ମେଢ଼ ୧୦ କ୍ରମିକ ନମ୍ବର ପାଇ ଶୋଭାଯାତ୍ରାରେ ଯିବାର ଅନୁମତି ଲାଭ କଲା । ଗୁଡିଆନାଳି ମେଢ଼ ମିଳିତ ଶୋଭାଯାତ୍ରାରେ ପୋଷ୍ଟ ଅଫିସ୍ ଛକଠାରୁ ଅନ୍ୟମାନଙ୍କ ସହ ଯୋଗଦାନ କରିବାର ପ୍ରଥା ପ୍ରଚଳନ ହେଲା ଏବଂ ତାହାପରେ ମିଳିତ ଶୋଭାଯାତ୍ରାରେ ବଳରାମ ଜୀଉ ମନ୍ଦିର ରାସ୍ତା ଦେଇ ରାଜବାଟୀ ପାଇ କାଠଯୋଡ଼ିରେ ମୂର୍ତ୍ତି ଗୁଡ଼ିକ ବିସର୍ଜନ ହେବାର ବିଧି ଥିଲା । ମୂର୍ତ୍ତିଗୁଡିକ ସେତେବେଳେ କାନ୍ଧୁଆ ହୋଇ ଶୋଭାଯାତ୍ରାରେ ଯାଉଥିଲେ ଏବଂ ରାଜବାଟୀରୁ ରାଜାଙ୍କ ସ୍ୱର୍ଣ୍ଣ-ଲକ୍ଷ୍ମୀ ପ୍ରତିମା ଶୋଭାଯାତ୍ରାରେ ସମସ୍ତ ମେଢ଼ ପଛରେ ଆସୁଥିଲେ । ଗୁଡିଆନାଳି ମେଢ଼ ହେବାର କିଛି ବର୍ଷ ପୂର୍ବରୁ ଏହି ପ୍ରଥା ପ୍ରଚଳିତ ହୋଇଥିଲା । ସେ ସମୟରେ ବିସର୍ଜନ ଶୋଭାଯାତ୍ରା ଦିନ ସମୟରେ ହେବା ବିଧିଥିବାରୁ ବହୁଲୋକ ତାକୁ ଦେଖିବାକୁ ମଫସଲ ଅଞ୍ଚଳରୁ ଆସୁଥାଆନ୍ତି । ପ୍ରତ୍ୟେକ ପୂଜା ପ୍ରତିଷ୍ଠାନ ସହ ଅନ୍ୟ ପୂଜା ପ୍ରତିଷ୍ଠାନର

ସ୍ନେହ ସୌହାର୍ଦ୍ଦ୍ୟ ଘନୀଭୂତ ଥିଲା । ପ୍ରତ୍ୟେକ ମେଢ଼ ଅନ୍ୟ ମେଢ଼ ମାନଙ୍କୁ ଖୋଳ, କରତାଳ ଧରି ଶଙ୍ଖ ଲ ଆସିବାର ଏକ ପ୍ରଥା ମଧ୍ୟ ଥିଲା । ଲକ୍ଷ୍ମୀ ପୂଜା ସଂପାଦନ କରିବା ପାଇଁ ସାହିର ବାସିନ୍ଦା ମାନଙ୍କ ମଧ୍ୟରେ ସ୍ନେହ, ସହାନୁଭୂତି ପୂର ରହିଥିଲା । ପୂଜା ଆସ୍ଥାନ ପାଇ ଅସ୍ଥାୟୀ ଗୃହଘର, ଡ଼ାଳ ଗୁମୁଣ୍ଡିଆ ତିଆରି ପ୍ରଥା ବହୁବର୍ଷ ଯାଏ ରହିଥିଲା । ମୋର ଯେତେଦୂରେ ମନେହୁଏ ମୁଁ ୧୯୫୮ ମସିହା ଯାଏ ସକ୍ରିୟ ଭାବେ ଲୁଣିଆନାଳୀର ଲକ୍ଷ୍ମୀପୂଜା ଦାୟିତ୍ୱରେ ଥିଲି ।

ସେତେବେଳର ପୂଜା ଓ ବର୍ତ୍ତମାନର ପୂଜା ମଧ୍ୟରେ ତୁଳନା କଲେ ବହୁତ ତାରତମ୍ୟ ମୋ ଆଖିକୁ ଆସୁଅଛି । ଆଜିର ପୂଜା ମଧ୍ୟରେ ଧର୍ମଭାବନା ଗୌଣ ହୋଇ ପଡ଼ୁଛି । ଆନ୍ତରିକତା ମାଧ୍ୟମରେ ପୂଜା ଆରାଧନା ପାଳନ ହେବା ପରିବର୍ତ୍ତେ ବାହ୍ୟ ଆଡ଼ମ୍ବର ବିଶେଷ ଭାବରେ ପ୍ରାଧାନ୍ୟ ଲାଭ କରୁଅଛି । ସେ ଯାହାହେଉନା କାହିଁକି ଆଜିର ଲକ୍ଷ୍ମୀ ପୂଜାର ସମ୍ଭାର ଢେଙ୍କାନାଳର ଜନ ଜୀବନକୁ ବେଶ୍ ପ୍ରଭାବିତ କରିଛି । ଏହାର ମହନୀୟ ଐତିହ୍ୟର ସ୍ମାରକୀ ଆଜିର ସମାଜରେ ବେଶ୍ ଆଦୃତ —ଏବଂ ଓଡ଼ିଶାରେ ସର୍ବତ୍ର ପ୍ରଶଂସିତ ହୋଇ ପାରିଛି ।

ଏହାର ଉତ୍କର୍ଷତର ଉନ୍ନତି ପାଇଁ ମୁଁ କାମନା କରୁଛି ।

ନମସ୍ତେଽସ୍ତୁ ମହାମାୟେ ଶ୍ରୀପୀଠ ସୁରପୂଜିତେ
ଶଙ୍ଖଚକ୍ର ଗଦାହସ୍ତେ ମହାଲକ୍ଷ୍ମୀ ନମୋଽସ୍ତୁତେ ।
ନମସ୍ତେ ଗରୁଡ଼ାରୁଢ଼େ କୋଲା ସୁର ଭୟଙ୍କରୀ
ସର୍ବପାପହରେ ଦେବୀ ମହାଲକ୍ଷ୍ମୀ ନମୋଽସ୍ତୁତେ ॥

—୦—

# ଲକ୍ଷ୍ମୀପୂଜା ସ୍ମୃତିଚାରଣା

ଶ୍ରୀ ସାରଙ୍ଗଧର ମହାପାତ୍ର

ଢେଙ୍କାନାଳ ସହରର ଲକ୍ଷ୍ମୀପୂଜା ଆଜି ଭାରତର ଅନ୍ୟତମ ପ୍ରଧାନ ଯାତ୍ରା ଭାବେ ପ୍ରସିଦ୍ଧି ଲାଭ କରିପାରିଛି । ସେଥିପାଇଁ ଆମେ ଢେଙ୍କାନାଳ ସହରବାସୀମାନେ ଗର୍ବିତ । ମୁଁ ଲକ୍ଷ୍ମୀପୂଜା ସହିତ ୧୯୫୫ ମସିହାରୁ ଜଡ଼ିତ । ୧୯୫୫ ମସିହାରେ ମୁଁ ମିନା ବଜାର ଲକ୍ଷ୍ମୀପୂଜା କମିଟିର ପ୍ରଥମେ ସହକାରୀ ସମ୍ପାଦକ ଓ ୧୯୬୦ରେ ସମ୍ପାଦକ ରୂପେ କାର୍ଯ୍ୟଭାର ଗ୍ରହଣ କଲି । ମୋ ଉପରେ ମୂର୍ତ୍ତିଆଣିବା, ଗ୍ରାମୁଡ଼ିଆ, ଆଲୋକସଜ୍ଜା ଓ ପ୍ରସେସନ୍ ର ଦାୟିତ୍ୱ ଥିଲା । ସେ ସମୟରେ କୁମ୍ଭାରସାହି, ଖରୁଡ଼ା ସାହି, ବଣିଆ ସାହିର ଲୋକମାନେ ବିଶେଷତଃ ଯୁବକମାନେ ଅତି ଉତ୍ସାହରେ ଗ୍ରାମୁଡ଼ିଆ ପାଇଁ ଗାତ ଖୋଳିବା, ଗ୍ରାମୁଡ଼ିଆ ବାନ୍ଧିବା, ଜଙ୍ଗଲରୁ ବଲ୍ଲୀ, ବାଉଁଶ, ତାଳପତ୍ର ପ୍ରଭୃତି ଆଣିବା ଓ ରଙ୍ଗିନ୍ କାଗଜରେ ଗ୍ରାମୁଡ଼ିଆ ସଜାଇବା ପ୍ରଭୃତି କାର୍ଯ୍ୟ ସ୍ୱେଚ୍ଛାକୃତ ଭାବେ କରୁଥିଲେ । ସେ ସମୟରେ ଲକ୍ଷ୍ମୀପୂଜାର ବିଶେଷ ଆକର୍ଷଣ ଥିଲା ବିଭିନ୍ନ ଦୃଶ୍ୟ ସମ୍ବଳିତ ପାର୍ଶ୍ୱ ମୂର୍ତ୍ତି ଓ ରାତିରେ ବିଭିନ୍ନ ପୂଜା ମଣ୍ଡପରେ ସଙ୍ଗୀତ ନାଚ ତାମସା ପ୍ରଭୃତି । ମିନା ବଜାର ଲକ୍ଷ୍ମୀପୂଜାର ବିଶେଷ ଆକର୍ଷଣ ଥିଲା ଗୃହମେଢ଼, ବିଦ୍ୟୁତ ସାଜସଜ୍ଜା ଓ ରାତିରେ ସଙ୍ଗୀତ ନାଚ ପ୍ରଭୃତି । ତାରକସୀ କାରୁକାର୍ଯ୍ୟ ସମ୍ବଳିତ ଗୃହମେଢ଼ ୧୯୬୧ ମସିହାରୁ ପର୍ଯ୍ୟାୟ କ୍ରମେ ଆରମ୍ଭ ହୋଇ ୧୯୬୫ ମସିହା ବେଳକୁ ସମ୍ପୂର୍ଣ୍ଣ ହୋଇ ପାରିଥିଲା । ଏହାକୁ କଟକର ବିଖ୍ୟାତ କାରିଗର ସୋମନାଥ ପୃଷ୍ଟି ନିର୍ମାଣ କରିଥିଲେ । ଏଥିରେ ପ୍ରାୟ ୪୫ କିଲୋଗ୍ରାମ୍ ରୂପା ଲାଗିଥିଲା ।

୧୯୬୫ ମସିହାରେ କୌଣସି କାର୍ଯ୍ୟରେ ମୁଁ କଲିକତା ଯାଇଥିବା ବେଳେ କଲେଜ ସ୍କୋୟାରରେ ଦୁର୍ଗାପୂଜା ଉପଲକ୍ଷେ ନିର୍ମିତ ବିରାଟ ପୂଜା ମଣ୍ଡପ ଦେଖିବାର ସୁଯୋଗ ପାଇଲି । ମଣ୍ଡପର ଭିତର ସାଜସଜ୍ଜା ଦେଖି ମୁଁ ଅତ୍ୟନ୍ତ ଅଭିଭୂତ ହୋଇପଡିଲି । ରଙ୍ଗୀନ କନାକୁ କୁଞ୍ଚକରି ବିଭିନ୍ନ ଡିଜାଇନ କରାଯାଇ ତନ୍ମଧ୍ୟରେ ଟିଉବ୍ ଲାଇଟ୍ ସବୁ ଏପରି ଖଂଜା ହୋଇଥାଏ ଯେ, ରାତିରେ ତାହା ଅତି ଚମତ୍କାର ଦେଖା ଯାଉଥାଏ । ଏହା ଦେଖି ମୁଁ ଆମ ଲକ୍ଷ୍ମୀପୂଜା ମଣ୍ଡପକୁ ଏହିପରି ସାଜସଜ୍ଜା କରିବାକୁ ମନସ୍ଥ କଲି । ପରବର୍ଷ ଅର୍ଥାତ ୧୯୬୬ ମସିହାରେ ତାଳ ଗୁମୁଡ଼ିଆ ପରିବର୍ତ୍ତେ କନାର ସାଜସଜ୍ଜା କରିବାକୁ କଟକର 'ଚନ୍ଦ୍ରଦାସୀ' ଙ୍କୁ ବରାଦ ଦିଆଗଲା । ସେ ସେହିବର୍ଷ ପ୍ରଥମେ ଆସି କନାଦ୍ୱାରା ମିନା ବଜାର ପୂଜାମଣ୍ଡପକୁ ସାଜସଜା କରିଥିଲେ । ସେହି ଦିନଠାରୁ ତାଳପତ୍ର ଦ୍ୱାରା ସଜିତ ଗୁମୁଡ଼ିଆକୁ ବିଦାୟ ଦିଆଗଲା ଓ ସାଜସଜା ଏକ ନୂତନ ରୂପର ମୋଡ଼ ନେଲା । ୧୯୬୮ ମସିହାରେ କଟକର 'ଭାରତୀ ଚନ୍ଦ୍ରାଳୟ' ଙ୍କୁ ପୂଜା ମଣ୍ଡପ ସଜାଇବା ପାଇଁ ବରାଦ ଦିଆଗଲା । ଏ ସାଜସଜ୍ଜା ଏପରି ଆକର୍ଷଣୀୟ ହୋଇଥିଲା ଯେ ପରବର୍ଷମାନଙ୍କରେ ଅନ୍ୟାନ୍ୟ ବଜାର ମଧ୍ୟ ତାଳ ଗୁମୁଡ଼ିଆ ପରିବର୍ତ୍ତେ କନା ଦ୍ୱାରା ସାଜସଜ୍ଜା କରିବାକୁ ଆରମ୍ଭ କଲେ । କିଛି ବର୍ଷପରେ କ୍ରମେ ରାସ୍ତା ଉପରେ ବିରାଟ ବିରାଟ ତୋରଣମାନ ଆରମ୍ଭ ହେଲା । ଏବେ ମଧ୍ୟ ସେହିପରି ଅତ୍ୟୁଚ୍ଚ ଆକର୍ଷଣୀୟ ତୋରଣମାନ ପ୍ରତିବର୍ଷ ରାସ୍ତା ଉପରେ ନିର୍ମିତ ହେଉଅଛି ଓ ତାହା ଢେଙ୍କାନାଳ ସହରର ଶୋଭା ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଓଡ଼ିଶା ତଥା ଓଡ଼ିଶା ବାହାରର ଦର୍ଶକମାନଙ୍କୁ ଆକର୍ଷଣ କରି ପାରୁଛି । ତୋରଣ ସାଙ୍ଗକୁ ରାସ୍ତା କଡରେ ବିଦ୍ୟୁତ ଆଲୋକ ସାଜସଜ୍ଜା ସୌନ୍ଦର୍ଯ୍ୟକୁ ଶତଗୁଣ ବଢାଇ ଦେଉଛି । ୧୯୭୭ ମସିହାରେ ମିନା ବଜାର ଲକ୍ଷ୍ମୀପୂଜା ମଣ୍ଡପ ସାମନାରେ କଟକର 'ସାହାଡେକୋରେଟର୍ସ' ଦ୍ୱାରା ନିର୍ମିତ ବିରାଟ ତୋରଣଟି ଇଲେକ୍ଟ୍ରି ଡେକୋରେସନ୍ରୁ ନିଆଁ ବାହାରି ଭସ୍ମଭୂତ ହୋଇଗଲା । ବର୍ତ୍ତମାନ ବ୍ୟୟ ବହୁଳ ନଭୋସ୍ପର୍ଶୀ ତୋରଣ ଓ ବିଦ୍ୟୁତ ସାଜସଜ୍ଜା ବିଭିନ୍ନ ବଜାର ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ମୂଳକ

ଭାବେ ହେଉଅଛୁ ଏବଂ ସଙ୍ଗୀତ, ନାଟଚାମସା ଅପେକ୍ଷା ଏହାକୁ ବିଶେଷ ପ୍ରାଧାନ୍ୟ ଦିଆଯାଉଛୁ ।

ଢେଙ୍କାନାଳର ଅନ୍ୟତମ ଗୌରବ ଓ ଲକ୍ଷ୍ମୀପୂଜାର ବିଶେଷ ଆକର୍ଷିତ ମିନା ବଜାରର ଗୃହମେଡଟି ୧୯୭୭ ମସିହା ନଭେମ୍ବର ଦୁଇ ତାରିଖରେ ମିନା ବଜାର ଲକ୍ଷ୍ମୀପୂଜା କମିଟି ସଭାପତି ଶ୍ରୀ ନଟବର ଦେବତାଙ୍କ ଦୋକାନ ଘରୁ ଅତି ଆଶ୍ଚର୍ଯ୍ୟଜନକ ଭାବେ ଚୋରି ହୋଇଗଲା । ପୁନର୍ବାର ଗୋଟିଏ ଗୃହମେଡ଼ କରି ମିନା ବଜାର ତଥା ଢେଙ୍କାନାଳର ଗୌରବ ଫେରାଇ ଆଣିବା ପାଇଁ ବଜାରର ସମସ୍ତ ବାସିନ୍ଦା ସଂକଳ୍ପବଦ୍ଧ । ଏଥିପାଇଁ କେତେକ ବନ୍ଧୁ ସ୍ୱେଚ୍ଛାକୃତ ଭାବେ ସାହାଯ୍ୟ କରି ଅଛନ୍ତି । ପ୍ରଥମ ପର୍ଯ୍ୟାୟରେ ଠାକୁରାଣୀଙ୍କର ଓ ସଖୀମାନଙ୍କର ଗୃହ ମୁକୁଟ ୨୩ ବର୍ଷ ହେଲା ତିଆରି ହୋଇ ଲାଗିକରି ଯାଉଅଛି ।

ଆଜିର ଏ ପୂଜା ଓ ସାଜସଜ୍ଜା ଦେଖି ଅତୀତର କଥା ମୋର ମନେପଡ଼େ । ପ୍ରାୟ ୫୦ ବର୍ଷ ତଳେ ମୋର ବୟସ ୧୨ ବର୍ଷ ହୋଇ ଥିବାବେଳେ ଉପର ଗଡ଼ରେ ହେଉଥିବା ଲକ୍ଷ୍ମୀପୂଜା ମୁଁ ଥରେ ଦେଖିଛୁ । ଯେଉଁ ନିର୍ଦ୍ଦିଷ୍ଟ ସ୍ଥାନରେ ପୂଜା ହେଉଥିଲା ଯଦିଓ ମୋର ମନେ ପଡ଼ୁନାହିଁ ତଥାପି ତାହା ହନୁମାନ ସାହିର କୌଣସି ସ୍ଥାନରେ ହୋଇ ଥିବାର ମୋର ମନେ ପଡ଼ୁଛି । ତାହାପରେ ସଚ୍ଚିବାବୁଙ୍କ ଘର ଠାରେ ଲକ୍ଷ୍ମୀପୂଜା ଦେଖି ଥିବାର ମୋର ସ୍ମରଣ ଅଛି । ମିନା ବଜାର ଲକ୍ଷ୍ମୀପୂଜା ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ୧୯୪୧ ମସିହାଠାରୁ ନିରବଚ୍ଛିନ୍ନ ଭାବେ ଆଜି ପର୍ଯ୍ୟନ୍ତ ପ୍ରଚଳିତ ହୋଇ ଆସୁଅଛି । ପରେ ପରେ ଜବାହାର ଚୌକ, ଲକ୍ଷ୍ମୀବଜାର, ଗଣେଶ ବଜାର, ମହାବୀର ବଜାର, କାଞ୍ଚନ ବଜାର, ଆନନ୍ଦ ବଜାର ଓ ଅନ୍ୟାନ୍ୟ ବଜାର ପ୍ରଭୃତି କ୍ରମାନ୍ୱୟରେ ବିଭିନ୍ନ ସମୟରେ ସେମାନଙ୍କର ପୂଜା ପ୍ରତିଷ୍ଠାନ ଆରମ୍ଭ କରି ପୂଜା କରି ଆସୁଛନ୍ତି ।

ଆଜିର ଏ ଲକ୍ଷ୍ମୀପୂଜା ଯେଉଁ ସ୍ତରରେ ପହଞ୍ଚିଛି ସେଥିପାଇଁ ମୁଁ ନିଜେ ଯଥେଷ୍ଟ ଗର୍ବ ଅନୁଭବ କରୁଛି ଆମ ବଜାରବାସୀ ମଧ୍ୟ

ସେତିକିଗର୍ବ ଅନୁଭବ କରୁଛନ୍ତି । ମାତ୍ର ଅତ୍ୟନ୍ତ ପରିତାପର ବିଷୟ ଲକ୍ଷ୍ମୀପୂଜା ଉପଲକ୍ଷେ ସାରା ସହରର ଆଲୋକ ସଜ୍ଜା ଓ ବିଭିନ୍ନ ଆମୋଦ ପ୍ରମୋଦରେ ମସ୍‌ଗୁଲ ରହିଥିବାବେଳେ ମିନାବଜାରର ଉତ୍ତର ପାର୍ଶ୍ୱର ଗୋଟିଏ ଅଂଶରେ ଗତ କେତେ ବର୍ଷ ଧରି ପୂଜାର ଠିକ୍ ପୂର୍ବରୁ ସ୍ଥାନୀୟ ପ୍ରଶାସନ ତରଫରୁ ମାସାଧିକ କାଳ ପର୍ଯ୍ୟନ୍ତ ୧୪୪ଧାରା ଜାରି ହେବାଦ୍ୱାରା ସେହି ଅଞ୍ଚଳର ବାସିନ୍ଦା ମାନଙ୍କୁ ଲକ୍ଷ୍ମୀ ପୂଜାର ଆନନ୍ଦ ଉପଭୋଗ କରିବାରୁ ବଞ୍ଚିତ କରା ଯାଉଅଛି ଓ ପ୍ରତିବର୍ଷ କେତେକ ନିରୀହ ଲୋକଙ୍କ ନାମରେ ଫୌଜଦାରୀ ଦଫା ଲଗାଯାଇ ମୋକଦମା ମାନ ଦାଏର କରାଯାଇ ଅଯଥାରେ ସେମାନଙ୍କୁ କୋର୍ଟକୁ ଟଣା ଯାଉଅଛି । ସରକାରୀ କଳ ତରଫରୁ କିମ୍ବା ସହରର ନେତୃ ସ୍ଥାନୀୟ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଏହାର ସ୍ଥାୟୀ ସମାଧାନ ନ ହୋଇ ପାରିବା ଅତ୍ୟନ୍ତ ଦୁଃଖ ଓ ପରିତାପର ବିଷୟ ।

ଗତ ୧୯୮୫ ମସିହା ଠାରୁ ମିନାବଜାରର ଯୁବବନ୍ଧୁମାନେ ପୂଜାର ନେତୃତ୍ୱ ନେଇ ସମସ୍ତ କାର୍ଯ୍ୟ ସୁରୁଖୁରୁ ରୂପେ ପରିଚାଳନା କରି ଆସୁଅଛନ୍ତି । ଅତୀତରେ ମିନାବଜାର ଯେପରି ପ୍ରତ୍ୟେକ ବିଷୟରେ ନେତୃତ୍ୱ ନେଇ ନିଜର ସମ୍ମାନ ବଜାୟ ରଖି ଆସିଛି, ଆଶାକରେ ଆମର ଯୁବବନ୍ଧୁ ତଥା ଭବିଷ୍ୟତ ବଂଶଧରମାନେ ସେହି ଗୌରବ ଅକ୍ଷୁର୍ଣ୍ଣ ରଖିବା ସଙ୍ଗେ ସଙ୍ଗେ ଯୁଗ ଓ ସମୟର ଗତି ସହିତ ସମତାଳରେ ଗତି କରିବେ । ଏଥିପାଇଁ ଜଗଜ୍ଜନନୀ ମା ଲକ୍ଷ୍ମୀ ସେମାନଙ୍କୁ ସବୁ ଦିଗରୁ ସହାୟ ହୁଅନ୍ତୁ ଏହାହିଁ କାମନା ।

-- ※ --




ମିଳିତ ଭସାଣି ଶୋଭ ଯାତ୍ରାର ଏକଦୃଶ୍ୟ (ତା ୨୭ । ୧୦ । ୮୬– ଲକ୍ଷ୍ମୀପୂଜା)

# ମା' ଲକ୍ଷ୍ମୀଙ୍କ ପୂଜା ଆରାଧନା

ଶ୍ରୀ ଗୋବିନ୍ଦ ଚନ୍ଦ୍ର ସାହୁ

ଓଡ଼ିଶାରେ ଗୃହୀଘର ମାନଙ୍କରେ ଶସ୍ୟ ଆକାରରେ ମା'ଲକ୍ଷ୍ମୀଙ୍କର ପୂଜା କରାଯାଏ । ଏହାକୁ ମାଣଗୌଣୀ ପୂଜା କୁହାଯାଏ । ନୂଆ ଆମଦାନ ହୋଇଥିବା ଶସ୍ୟ ମାନଙ୍କରେ ଏହି ପୂଜାବିଧି କରାଯାଏ ।

ଆମ ଢେଙ୍କାନାଳ ଯୁବକ ଶ୍ରୀ ନଟବର ଦେବତା ଲକ୍ଷ୍ମୀ ପୂଜାକୁ ସାର୍ବଜନୀନ କରାଇବା ପାଇଁ ସମୂହ ଲୋକଙ୍କର ସାହାଯ୍ୟନେଇ ଲକ୍ଷ୍ମୀ ପୂଜା ଆରମ୍ଭ କଲେ । ଏହି ପୂଜା ବର୍ତ୍ତମାନ ଢେଙ୍କାନାଳ ବଜାରରେ ହେଉଛି । ଏହା ଛଡ଼ା ଢେଙ୍କାନାଳର ମଫସଲ ଅଞ୍ଚଳ ମାନଙ୍କରେ ଲକ୍ଷ୍ମୀ ପୂଜା ହେଉଅଛି ।

ଓଡ଼ିଶାର ଅନ୍ୟ ଜିଲ୍ଲା ମାନଙ୍କରେ ମଧ୍ୟ ପୂଜା ହେଉଅଛି ।

ଢେଙ୍କାନାଳର ସାର୍ବଜନୀନ ଲକ୍ଷ୍ମୀପୂଜା ଦେଶର ଘୋର ଦୁର୍ଦ୍ଦିନରେ ଆରମ୍ଭ ହୋଇଥିଲା । ଯେତେବେଳେ ଗାନ୍ଧିଜୀ ଇଂରେଜ ମାନଙ୍କୁ ଶାସନ ଛାଡ଼ି ଚାଲି ଯିବାକୁ ଡାକରା ଦେଉଥିଲେ, ଗଡ଼ଜାତ ପ୍ରଜାମାନେ ରଜାମାନଙ୍କୁ ଶାସନ ଛାଡ଼ି ଦେବାକୁ କହୁଥିଲେ । ହିଟଲର ପୃଥିବୀ ବ୍ୟାପୀ ମହାଯୁଦ୍ଧ କରୁଥାଏ । ଘୋର ଆତଙ୍କର ସମୟ । ଏଭଳି ବିପତ୍ତି ସମୟରେ

**ସର୍ବେ ହୋଇବେ ଏକମୁଖ, ଡାକିବେ ନାରାୟଣ ରଖ ।**

ଢେଙ୍କାନାଳବାସୀ ଏକଜୁଟ ହୋଇ ମା' ଲକ୍ଷ୍ମୀଙ୍କର ଆରାଧନା କରି ଆସୁଛନ୍ତି ।

ଭଗବାନଙ୍କର ଆରାଧନା, ପୂଜା କଲେ ଫଳ କ'ଣ ମିଳେ କେହି ଜାଣେନା—କୋଟିକେ ଗୋଟିଏ ପୂଜାର ତତ୍‌କ୍ଷଣାତ୍ ଫଳ ପାଇବାର

ଶୁଣୋଶୁଣିରେ ଯାଣୁ । ଏହି ପୂଜାକର ତତ୍ତ୍ୱକାରୁ ଫଳଲାଭ ଆଶାରେ ପୂଜା କରନ୍ତି । କିନ୍ତୁ ଢେଙ୍କାନାଳରେ କୌଣସି ଆଶା ବା କାମନା ରଖି ଏଠାରେ ପୂଜାକରୁ ଯାଉଥିବା ପରି ମନେ ହୁଏନା । ସମସ୍ତଙ୍କ ମନରେ ଦେଶର ମଙ୍ଗଳ ହେଉ । ଦେଶ ଧନ ଧାନ୍ୟରେ ଭରିଯାଉ—ଏହି ପ୍ରେରଣ ଆଶୀର୍ବାଦ ତାଙ୍କଠାରୁ ମାଗନ୍ତି ।

ଆମ ଦେଶରେ ବିଶ୍ୱାସ ଯେ ଗୃହିଣୀଲେ ଅଭାବ ଅନାଟନ ଦୂରକରି ଦେଶର ଶାନ୍ତି ଆଣିଦେଇ ପାରିବେ । ଚର୍ଚ୍ଚା କଲେ ଦେଖାଯାଏ ଏହି ପୂଜା ପରଠାରୁ ହିଟଲର ଯୁଦ୍ଧ ବନ୍ଦ ହୋଇଗଲା । ଇଂରେଜମାନେ ଆମ ଦେଶର ଲୋକଙ୍କୁ ଶାସନଦେଇ ଚାଲିଗଲେ । ରାଜାମାନେ ମଧ୍ୟ ଲୋକଙ୍କୁ ଶାସନ ଦେଇଦେଲେ । ଶାନ୍ତି ଫେରି ଆସିଲା । ଯେଉଁ ଦେଶ ଲୋକେ ଛୁଞ୍ଚି ତିଆରି ଜାଣି ନଥିଲେ । ସେହି ବିଦେଶି ଲୋକେ ଉପକାରୀ କାରଖାନା ଦେଶରେ ଶସ୍ୟ ଉତ୍ପାଦନ ଦିନୁଦିନ ବଢ଼ିବାରେ ଲାଗିଛି । ସେହି ମା'ଙ୍କର ସବୁ କରୁଣା । ଆମ ଢେଙ୍କାନାଳର ନିପଟ ଜଙ୍ଗଲ ଅଞ୍ଚଳରେ କଳ-କାରଖାନା କରାଯାଇ ଦେଶର ଭବିଷ୍ୟତ ଉଜ୍ଜଳ କରାଯାଉଛି ଏହା ସେହି ମା'ଙ୍କର କରୁଣାର ଫଳ । ଆମ ଅଞ୍ଚଳ ଆଜି ଆଗକୁ ଯିବ—ସେଥି ପାଇଁ ମା' ଲକ୍ଷ୍ମୀ ଆମକୁ କରୁଣା କରିବେ ବୋଲି ତାଙ୍କୁ ଆମେ ଜଣାଉ କରୁଛୁ ମା' ଲକ୍ଷ୍ମୀଙ୍କର ପୂଜା ଆରାଧନା ଏହିପରି ଚାଲି ଥାଉ, ଆମ ଦେଶର ଏ ଭଳି ଉନ୍ନତିରୁ ଉନ୍ନତି ହେଉ ଥାଉ । ମା ଲକ୍ଷ୍ମୀ ଦେଶର କର୍ମଧାର ମାନଙ୍କୁ ପ୍ରେରଣା ଆଶୀର୍ବାଦ ଦେଉଥାନ୍ତୁ । ଏହା ଆମର କାମନା ।

ସର୍ବେ ଭବନ୍ତୁ ସୁଖିନଃ
ସର୍ବେ ସନ୍ତୁ ନିରାମୟା
ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ
ମା କଶ୍ଚିତ ଦୁଃଖ ଭାଗଭବେତ୍
ଓଁ ଶାନ୍ତି ଶାନ୍ତି ଶାନ୍ତି ।

# ସ୍ୱତନ୍ତ୍ର ଯୋଜନା ଅଧିକାରୀ, ଢେଙ୍କାନାଳ

ସ୍ଥାନ :— ସହର ଯୋଜନା ଶାଖା କାର୍ଯ୍ୟାଳୟ

ଗାନ୍ଧୀ ମନ୍ଦିର ରୋଡ୍, ଢେଙ୍କାନାଳ

ସ୍ୱତନ୍ତ୍ର ଯୋଜନା ଅଧିକାରୀଙ୍କର ଢେଙ୍କାନାଳ ସହରର ସର୍ବାଙ୍ଗୀନ ଉନ୍ନତି ପାଇଁ ମହାଲକ୍ଷ୍ମୀ ପୂଜା ଉପହାର······

୧ । କୋଠଅାଁ ଠାରେ ମହାଲକ୍ଷ୍ମୀ ସିନେମା ନିକଟରେ ନିର୍ମିତ ହୋଇଥିବା ଦୋକାନ ଘର ଗୁଡ଼ିକୁ ଭଡ଼ା ସୂତ୍ରରେ ସୁଲଭ ମୂଲ୍ୟରେ ଯୋଗାଇ ଦିଆଯାଉଛି ।

୨ । ବେଣୁଗୋପାଳ ମଠ ଠାରେ ୨୬ ବଖରା ଦୋକାନ ଘର ନିର୍ମାଣ କରାଯାଇ ଭଡ଼ା ସୂତ୍ରରେ ଦେବା ପାଇଁ ଦରଖାସ୍ତ ଆହ୍ୱାନ କରା ଯାଉଛି ।

୩ । କାଳୀପୂଜା ପଡ଼ିଆ (ଜାତୀୟ ରାଜପଥ ସଂଲଗ୍ନ) ନିକଟରେ ଅନେକ ଗୁଡ଼ିଏ ଦୋକାନ ଘରର ନିର୍ମାଣ କାର୍ଯ୍ୟ ଖୁବ୍ ଶିଘ୍ର ଆରମ୍ଭ ହେବାକୁ ଯାଉଛି ।

୪ । ବେଣୁଗୋପାଳ ମଠଠାରେ ନିର୍ମାଣ ହୋଇଥିବା ଦୋକାନ ଗୃହ ଉପର ମହଲା ଗୁଡ଼ିକରେ ଅଫିସ ଗୃହ ନିର୍ମାଣକାର୍ଯ୍ୟ ଖୁବ୍ ଶିଘ୍ର ଆରମ୍ଭ ହେବାକୁ ଯାଉଅଛି ।

ଉପରୋକ୍ତ ଦୋକାନ ଗୃହ ଗୁଡ଼ିକୁ ଭଡ଼ା ସୂତ୍ରରେ ନେବାକୁ ଇଚ୍ଛୁକ ବ୍ୟକ୍ତିମାନେ ସ୍ୱତନ୍ତ୍ର ଯୋଜନା ଅଧିକାରୀ, ଢେଙ୍କାନାଳଙ୍କ ସହ ଯୋଗାଯୋଗ କରିବାକୁ ଅନୁରୋଧ ।

**ସୀତାଂଶୁ ମୋହନ ପଟ୍ଟନାୟକ**
ସ୍ୱତନ୍ତ୍ର ଯୋଜନା ଅଧିକାରୀ
ଢେଙ୍କାନାଳ

# ଗଡଖଣ ବଜାର ଲକ୍ଷ୍ମୀ ମନ୍ଦିର

ଶ୍ରୀ ଧର୍ମାନନ୍ଦ ସାହୁ

୧୯୪୨ ମସିହା ପୂର୍ବରୁ ଢେଙ୍କାନାଳ ସହରରେ ଲକ୍ଷ୍ମୀପୂଜା ମହିଶଗଡ଼ ବର୍ତ୍ତମାନର ମିନାବଜାରଠାରେ ଆରମ୍ଭ ହୋଇଥିଲା । କାଳକ୍ରମେ ଗୋଟିଏ ଗୋଟିଏ ହୋଇ ଅନୁଷ୍ଠାନ ମାନ ଗଢ଼ିଉଠି ଲକ୍ଷ୍ମୀପୂଜାରେ ଅଂଶ ଗ୍ରହଣ କରିବାକୁ ଲାଗିଲେ । ତିନିଗୋଟି ଲକ୍ଷ୍ମୀମେଢ ଓ ମଣ୍ଡପ ପ୍ରତିଷ୍ଠା ପରେ ଢେଙ୍କାନାଳ ଉପର ଗଡ଼ କୁଂଜସାହୁ ଛକ ଠାରେ ୧୯୪୯ ମସିହାରେ ୪ର୍ଥ ଲକ୍ଷ୍ମୀପୂଜା ପ୍ରତିଷ୍ଠାନର ଶୁଭାରମ୍ଭ ହେଲା ।

ଏହି ଉପରଗଡ଼ର ଖପୁର ଓ କଟକ ରାସ୍ତାକୁ ସଂଯୋଗ କରୁଥିବା ଛକକୁ କୁଂଜ ସାହୁ ଛକ ବୋଲି କୁହାଯାଉଅଛି । କୁଞ୍ଜସାହୁ ଛକଠାରେ ବର ଓ ଅଶ୍ୱତ୍ଥ ଗଛ ମୂଳରେ ବହୁବର୍ଷ ପୂର୍ବେ ଶ୍ରୀ ମହାଲକ୍ଷ୍ମୀଙ୍କ ସାମୟିକ ପୂଜା, ଅର୍ଚ୍ଚନା ମେଳା ମହୋତ୍ସବ ଆଦି ସ୍ଥାନୀୟ ଧର୍ମପ୍ରାଣ ବ୍ୟକ୍ତିଙ୍କ ତରଫରୁ ପାଳନ କରାଯାଉ ଥିବାର ଜଣାଯାଇଥିଲା । ଯେତେବେଳେ ଉପରଗଡ଼ ଠାରେ ଲକ୍ଷ୍ମୀପୂଜା ଓ ଯାତ୍ରା ଆରମ୍ଭ ହେଲା ସେଇଠାରେ ସାହି ବାସିନ୍ଦାମାନଙ୍କ ତରଫରୁ ଏକ ଅସ୍ଥାୟୀ ଗୃହ ନିର୍ମାଣ କରାଯାଇ ମହାଲକ୍ଷ୍ମୀଙ୍କ ଏକ ବିଗ୍ରହ ପ୍ରତିଷ୍ଠା କରାଯାଇ ଯାତ୍ରା ଆରମ୍ଭ କରାଗଲା ।

ସର୍ବ ପ୍ରଥମେ ସ୍ୱର୍ଗୀୟ ଶ୍ୟାମସୁନ୍ଦର ସାହୁ ଲକ୍ଷ୍ମୀପୂଜା ଓ ଯାତ୍ରାର ଦାୟିତ୍ୱ ଗ୍ରହଣ କରିଥିଲେ । ପରେ ସ୍ୱର୍ଗୀୟ ଅଭୟ ଶଙ୍କର ରାୟ ପୂଜା ଓ ଯାତ୍ରା ଚଳାଇ ଥିଲେ । ୧୯୬୦ ମସିହାରେ ପୂଜା ପରିଚାଳନା ପାଇଁ ଏକ ସ୍ୱତନ୍ତ୍ର କମିଟି ଗଠନ କରାଯାଇ ସଭାପତି ଭାବରେ ଶ୍ରୀ ଧର୍ମାନନ୍ଦ ସାହୁ ଓ ସମ୍ପାଦକ ଭାବରେ ଶ୍ରୀ ଦଣ୍ଡ ପାଣି ଦୋରା ମନୋନୀତ ହେଲେ । ସାହି ବାସୀଙ୍କ ଅନୁଦାନରେ ଲକ୍ଷ୍ମୀପୂଜା ଓ ଯାତ୍ରାର ସମସ୍ତ ଖର୍ଚ୍ଚ ବହନ କରାଯାଉଥିଲା । ସ୍ଥାନୀୟ ଦଧିବାମନ ଜୀଉଙ୍କ ପୂଜକ ବାବାଜୀ ମଧୁସୂଦନ ଦାସ ବୈରାଗୀ ପାଉରୋହିତ୍ୟରେ ଲକ୍ଷ୍ମୀପୂଜା କାର୍ଯ୍ୟ ଚଳାଉଥିଲେ ।

ଉକ୍ତ ପୂଜା ପ୍ରତିଷ୍ଠାନର ଅସ୍ଥାୟୀ ଗୃହଘର ଯେଉଁଠାରେ ପ୍ରତିବର୍ଷ ଲକ୍ଷ୍ମୀଙ୍କ ପୂଜା ଅର୍ଚ୍ଚନା ହୁଏ, ସେଠାରୁ ତାହା ହଟାଇ ଦେବାକୁ ଓ ସେ ସ୍ଥାନରେ ବର୍ମାସେଲ୍ କମ୍ପାନୀର ଗୋଟିଏ ପେଟ୍ରୋଲ ପମ୍ପ ବସାଇବାକୁ ଜିଲ୍ଲା କର୍ତ୍ତୃପକ୍ଷ ସ୍ଥିର କଲେ । ସରକାରୀ ଜାଗାରେ ବିନାନୁମତିରେ ଲକ୍ଷ୍ମୀପୂଜା ପାଇଁ ଅସ୍ଥାୟୀ ଗୃହ ନିର୍ମାଣ କରିଥିବାରୁ ପୂଜା କମିଟିକୁ କାରଣ ଦର୍ଶାଅ ନୋଟିସ ହେଲା ଓ ସୀମିତ ସମୟ ମଧ୍ୟରେ ଉକ୍ତ ଗୃହ ଉଠାଇ ଦେବାକୁ ନିର୍ଦ୍ଦେଶ ହେଲା । ବର୍ମାସେଲ କମ୍ପାନୀକୁ ପମ୍ପ–ବସାଇବାକୁ ଅନୁମତି ମିଳିଲା ।

ଗୋଟିଏ ପେଟ୍ରୋଲ ଟାଙ୍କି ଅଣାଯାଇ ସେଠାରେ ରଖାଗଲା । ମାତ୍ର ପୂଜା କମିଟି ଏହାର ଦୃଢ଼ ପ୍ରତିବାଦ ଜଣାଇବା ସଙ୍ଗେ ସଙ୍ଗେ ସେଠାରେ ଗୋଟିଏ ସ୍ଥାୟୀ ଗୃହ ନିର୍ମାଣ ପାଇଁ ବଦ୍ଧ ପରିକର ହେଲେ । ଲକ୍ଷ୍ମୀ ମନ୍ଦିର ତିଆରି ପାଇଁ ସର୍ବ ସାଧାରଣଙ୍କ ତରଫରୁ ସମର୍ଥନ ମିଳିବା ସଙ୍ଗେ ସଙ୍ଗେ ଅନୁଦାନ ମଧ୍ୟ ଆପେ ଆପେ ସଂଗୃହୀତ ହେଲା ।

ହଠାତ୍ ସମ୍ବାଦ ମିଳିଲା ଯେ ଉତ୍ତରାଞ୍ଚଳ ରାଜସ୍ୱ କମିଶନର ଏହି ସ୍ଥାନ ପରିଦର୍ଶନରେ ଆସି ଏହି ଅସ୍ଥାୟୀ ଗୃହକୁ ଭାଙ୍ଗି ଦେବେ ଓ ପେଟ୍ରୋଲପମ୍ପ ପ୍ରତିଷ୍ଠା କରିବେ । ଉକ୍ତ ସମ୍ବାଦ ସେଠାରେ ଏକ ବିଶୃଙ୍ଖଳା ସୃଷ୍ଟି କରିଥିଲା । ପୂଜା କମିଟିର ସଭ୍ୟ ତଥା ସାହି ବାସୀଙ୍କ ଦୃଢ଼ ମନୋବଳ ପ୍ରକାଶ ପାଇଲା ସରକାରଙ୍କ ଏ ପ୍ରକାର ନିର୍ଦ୍ଦେଶକୁ ଦୃଢ଼ ଭାବରେ ପ୍ରତିରୋଧ କରିବାକୁ ସ୍ଥିର ହେଲା ।

୧୯୫୧ ମସିହା ଫେବୃୟାରୀ ମାସରେ ରାଜସ୍ୱ କମିଶନର ଢେଙ୍କାନାଳ ଗସ୍ତରେ ଆସି ଲକ୍ଷ୍ମୀଙ୍କ ଅସ୍ଥାୟୀ ଗୃହ ପରିଦର୍ଶନ କଲେ । ଲକ୍ଷ୍ମୀଙ୍କ ବିଗ୍ରହ ଦର୍ଶନ କଲାବେଳେ ହରିବୋଲ ହୁଳହୁଳି ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହେଲା । ପୂଜକ ତଥା କମିଟି ସଭ୍ୟମାନେ ତାଙ୍କୁ ଅଭିନନ୍ଦନ ଜଣାଇ ମାଲକ୍ଷ୍ମୀଙ୍କ ବିଗ୍ରହ ପ୍ରତିଷ୍ଠାର ସୂଚନା ଦେଲେ । ଲକ୍ଷ୍ମୀଙ୍କ ବିଗ୍ରହ ଦର୍ଶନ ପରେ କମିଶନର ସାହେବ ଭାବ ବିହ୍ୱଳ ହୋଇ ହରିବୋଲ ଧ୍ୱନିରେ ଅଭିଭୂତ ହେଲେ ଓ ଲକ୍ଷ୍ମୀଙ୍କ ସିନ୍ଦୂର ଚିହ୍ନ ପୂର୍ବକ ନୀରବରେ ସେଠାରୁ ବିଦାୟ ନେଇ ଚାଲିଗଲେ । ପରେ କମିଟିକୁ ଲିଜ ଦଲିଲ ଶୀଘ୍ର ଦେବାକୁ ନିର୍ଦ୍ଦେଶ ହେଲା । ଦଲିଲ ଦିଆଗଲା ଏହା ପରେ ଲକ୍ଷ୍ମୀଙ୍କ ମନ୍ଦିର ତୋଳା ପର୍ବ ଆରମ୍ଭ ହେଲା. ଏକ ବର୍ଷ ମଧ୍ୟରେ ସମ୍ପୂର୍ଣ୍ଣ କରାଗଲା । ଏହି ମନ୍ଦିର ଗଣେଶ ବଜାର ଲକ୍ଷ୍ମୀ ମନ୍ଦିର ନାମରେ ନାମିତ ହେଲା । ଏହି ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଗଣେଶ ମନ୍ଦିର ବହୁ ଆଗରୁ ପ୍ରତିଷ୍ଠିତ । ଲକ୍ଷ୍ମୀ ଗଣେଶଙ୍କ ଏକସ୍ଥାନରେ ଅପୂର୍ବ ସମାବେଶ ବିଧିନିର୍ଦ୍ଦିଷ୍ଟ ବୋଲି ପ୍ରକାଶ ପାଇଲା । ଲକ୍ଷ୍ମୀ ମନ୍ଦିର ଶ୍ରୀସୌଭାଗ୍ୟଲକ୍ଷ୍ମୀ ମନ୍ଦିର ନାମରେ ନାମିତ ହେଲା ।

ଏହି ମନ୍ଦିର ଢେଙ୍କାନାଳ ସହରର ପ୍ରଥମ ସ୍ଥାୟୀ ଲକ୍ଷ୍ମୀ ମନ୍ଦିର । ଅନ୍ୟ କୌଣସି ବଜାରରେ ସ୍ଥାୟୀ ଲକ୍ଷ୍ମୀ ମନ୍ଦିର ସେପର୍ଯ୍ୟନ୍ତ ପ୍ରତିଷ୍ଠା ହୋଇନଥିଲା । ଏଠାରେ ପ୍ରତ୍ୟେହ ଦୀପଧୂପ ଓ ଅବକାଶ ହୁଏ । ପ୍ରତି ଗୁରୁବାର ପାଳିତ ହୁଏ । ଲକ୍ଷ୍ମୀ ପୂଜାରେ ଏହି ମନ୍ଦିରରେ ୫୬ ଭୋଗ ପ୍ରଥା ଚଳାଯାଇଛି । ମନ୍ଦିରର ଅଧିକ ଉନ୍ନତି ବିଧାନ ଓ ଲକ୍ଷ୍ମୀଙ୍କ ପଥର ବିଗ୍ରହ ସ୍ଥାପନ ଓ ଗୋଟିଏ ପୂର୍ଣ୍ଣାଙ୍ଗ ମନ୍ଦିର ନିର୍ମାଣ କରାଯିବାପାଇଁ କମିଟି ତରଫରୁ ଉଦ୍ୟମ ଅବ୍ୟାହତ ରହିଛି । ଏହି ମନ୍ଦିର ପାର୍ଶ୍ୱରେ ବାବାଜୀ ମଧୁସୂଦନ ଦାସଙ୍କ ଦେହାନ୍ତ ପରେ ତାଙ୍କ ନାମରେ ନାମିତ ମଧୁସୂଦନ କ୍ଲବ ପ୍ରତିଷ୍ଠା କରାଯାଇଛି ।



# ବୈଦିକମତରେ ଲକ୍ଷ୍ମୀପୂଜା

ଶ୍ରୀ ଶ୍ରୀଶେଷ ପ୍ରତାପ ସିଂହଦେବ
ଶ୍ରୀ ଗୌରେନ୍ଦ୍ର ପ୍ରତାପ ସିଂହଦେବ

ସ୍ତବନ :—

ଯା ଦେବୀ ସର୍ବଭୂତେଷୁ ଲକ୍ଷ୍ମୀ ରୂପେଣ ସଂସ୍ଥିତା
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ ॥

ଯେତେବେଳେ ବ୍ରହ୍ମନ୍ ଜଣେ 'ଆଦର୍ଶ ମନୁଷ୍ୟ' ବା 'ପୁରୁଷୋତ୍ତମ' ଭାବରେ କଳ୍ପିତ ହେଲେ, ତାଙ୍କ ପାଇଁ ଜଣେ ଆଦର୍ଶ ମହିଳା, ତାଙ୍କର ପତ୍ନୀ ରୂପେ ମଧ୍ୟ ପ୍ରକାଶିତ ହେବା ସ୍ୱତଃ ପ୍ରୟୋଜନ ହେଲା—ସେ ହେଲେ "ଲକ୍ଷ୍ମୀ"। ସେ କ୍ଷୀର ସମୁଦ୍ର ମନ୍ଥନ ବେଳେ ବାହାରି ଥିଲେ। ସମ୍ପୂର୍ଣ୍ଣ ପବିତ୍ରତା ଏବଂ ସାତ୍ତ୍ୱିକ ଭାବର ସଙ୍କେତ ଏହି ଦୁଗ୍ଧର ଶୁଭ୍ରତା (ପୁରୁଷୋତ୍ତମଙ୍କ ସ୍ତ୍ରୀ ବା ପୁରୁଷୋତ୍ତମା), ଗୋଟିଏ ପ୍ରସ୍ଫୁଟିତ ପଦ୍ମ ଉପରେ ବସନ୍ତି। ଏହି ପଦ୍ମ, ପବିତ୍ରତା ଓ ମହତ୍ତ୍ୱର ପ୍ରତୀକ। ସେ ପ୍ରଚୁର ପରିମାଣରେ ଧନ ସୃଷ୍ଟିର ପାଳନ ଓ ସଂରକ୍ଷଣ ପାଇଁ ବିତରଣ କରନ୍ତି। ଏହି ସଂରକ୍ଷଣ ତାଙ୍କର ସ୍ୱାମୀ ବିଷ୍ଣୁଙ୍କର ଦାୟିତ୍ୱ। ବସ୍ତୁତଃ ସୃଷ୍ଟିର ପାଳନ ଓ ସଂରକ୍ଷଣ କାର୍ଯ୍ୟରେ ସେ ହେଉଛନ୍ତି ବିଷ୍ଣୁଙ୍କର ସାହାଯ୍ୟକାରିଣୀ ଶକ୍ତି। ତାଙ୍କର ବାହାନ ପେଚକ। ପୁରାଣ ଅନୁସାରେ ଏହା ଜ୍ଞାନ ପକ୍ଷୀ। ଲକ୍ଷ୍ମୀଙ୍କର ଚାରିଗୋଟି ହାତ ଅଛି। ଏହା ଦ୍ୱାରା ସେ ଉପଯୁକ୍ତ ପାତ୍ରରେ ସମ୍ପଦ ଅର୍ପଣ କରନ୍ତି। ଲକ୍ଷ୍ମୀ ନାରାୟଣ ଯୁଗଳ ମୂର୍ତ୍ତି ବେଳେ ତାଙ୍କର ଦୁଇ ହସ୍ତ ଥିବାର ସଚରାଚର ଦେଖା ଯାଇଥାଏ।

ମା ଲକ୍ଷ୍ମୀ ଭାରତ ବର୍ଷରେ ସର୍ବତ୍ର ପୂଜିତା । ମୂଳ ପୂଜା ପାଠ ଏକ ହେଲେ ମଧ୍ୟ, ଲକ୍ଷ୍ମୀପୂଜା ବିଭିନ୍ନ ସ୍ଥାନରେ ଦେଶ କାଳ ପାତ୍ର ବିଶେଷରେ ବିଭିନ୍ନ ଆକାର ଧାରଣ କରିଛି । ସେଥିଯୋଗୁଁ ଓଡ଼ିଶାର ଲକ୍ଷ୍ମୀ ପୂଜାରେ କେତେଗୁଡ଼ିଏ ବିଶେଷତ୍ୱ ଦୃଷ୍ଟ ହୁଏ । ହିନ୍ଦୁ ମତରେ ମାର୍ଗଶିର ମାସ ସର୍ବ ଶ୍ରେଷ୍ଠ — "ମାସାନାଂ ମାର୍ଗଶୀର୍ଷୋ" ଏହି ମାସରେ ଧାନ ପାଚେ । ଲକ୍ଷ୍ମୀ ଦେବୀ ଧନଧାନ୍ୟର ଅଧିଷ୍ଠାତ୍ରୀ ଦେବୀ । ମନ ଉଲ୍ଲାସରେ ଲକ୍ଷ୍ମୀ ଦେବୀଙ୍କୁ ସନ୍ତୋଷ କରିବାକୁ ଘରେ ଘରେ ଲକ୍ଷ୍ମୀପୂଜା ଦେଖା ଯାଇଥାଏ । ଲକ୍ଷ୍ମୀ ଠାକୁରାଣୀଙ୍କର ପ୍ରିୟ ଦିନ ହେଲା ଗୁରୁବାର । ଏଣୁ ମାର୍ଗଶିରମାସ ଗୁରୁବାର ଗୁଡ଼ିକରେ ଲକ୍ଷ୍ମୀପୂଜା ହୁଏ । ଏହି ମାର୍ଗଶିର ମାସର ଗୁରୁବାର ପୂଜା ଗୁଡ଼ିକୁ ମାଣବସା ଗୁରୁବାର, ଧାନମାଣିକ ପୂଜା, ଓଷା ଆଦି ଅନେକ ଆଖ୍ୟା ଦିଆଯାଇଥାଏ । ମାସରେ ସାଧାରଣତଃ ଚାରୋଟି କମ୍ବା ପାଞ୍ଚୋଟି ଗୁରୁବାର ପଡ଼େ । ଏଥି ମଧ୍ୟରୁ ମାସର ଶେଷ ଗୁରୁବାର ଦିନ ବିଶେଷ ଭାବେ ପୂଜା ହୋଇଥାଏ । ମାସର ଶୁକ୍ଳ ପକ୍ଷ ଦଶମୀ ଦିନ, ଗୁରୁବାର ହୋଇଥିଲେ ସେଦିନ ସୁଦଶା ବ୍ରତରେ ଲକ୍ଷ୍ମୀପୂଜା ପାଳିତ ହୁଏ । ଏତଦ୍‌ବ୍ୟତୀତ, ଗୃହିଣୀ ମାନେ ବାର ମାସର ପ୍ରତ୍ୟେକ ଗୁରୁବାର, ଲକ୍ଷ୍ମୀଙ୍କ ବାର ବୋଲି ମାନନ୍ତି ।

• •

ଏହିଠାରେ ଆମ ଢେଙ୍କାନାଳରେ ଲକ୍ଷ୍ମୀ ପୂଜାର ପରମ୍ପରା ବିଷୟରେ ପଦେଅଧେ ଚର୍ଚ୍ଚା କଲେ, ମନେହୁଏ ଅବାନ୍ତର ହୁଏନାହିଁ । ବର୍ତ୍ତମାନ ଏହା ଅବିଦିତ ନୁହେଁ, ଯେ ଭାରତ ବିଖ୍ୟାତ ବିଶିଷ୍ଟ ଭାଗବତ, ଗୀତା ଆଦିର ସଂସ୍କୃତ ଟିକାକାର, ଚତୁର୍ଦ୍ଦଶ ଶତାବ୍ଦୀର, ଜଗତ୍‌ଗୁରୁ ଶ୍ରୀଧର ସ୍ୱାମୀ, ପୁରୀ ଗଜପତି ମହାରାଜଙ୍କ ନିର୍ଦ୍ଦେଶରେ, କପିଳାସ ଶ୍ରୀ ଚନ୍ଦ୍ରଶେଖରଜୀଉଙ୍କର ତତ୍ତ୍ୱାବଧାରକ ଥିବା ସମୟରେ ତାଙ୍କ ଗୁରୁଙ୍କ ସ୍ଥାପିତ ବହ୍ନୃଚ ମଠରେ ରହିଥିଲେ । ପୁରୀ ଗୋବର୍ଦ୍ଧନ ପୀଠର ଶଙ୍କର ମଠର ଶିଷ୍ୟ ଭାବେ ସେ ଆଦି ଶଙ୍କରଙ୍କ ପରମ୍ପରାର ଦଣ୍ଡୀ ବ୍ରହ୍ମଚାରୀ । ଶ୍ରୀ ଶଙ୍କର ଲକ୍ଷ୍ମୀ ନୃସିଂହଙ୍କର ମଧ୍ୟ ଉପାସକ ଥିଲେ । ତାଙ୍କର ଲକ୍ଷ୍ମୀ ନୃସିଂହ ସ୍ତୋତ୍ରର ପ୍ରତ୍ୟେକ ଶ୍ଳୋକ ଶେଷରେ ପାଠ କରାଯାଏ, "ଲକ୍ଷ୍ମୀ ନୃସିଂହ ମମଦେହି କରାବଲମ୍ବ" । ସ୍ୱାମୀ ପାଦ

ଶ୍ରୀଧର ଏହି ନୃସିଂହଙ୍କର ଉପାସନା କରି, ସିଦ୍ଧିଲାଭ କରିଥିଲେ । ସେହି କାଳରୁ କିମ୍ବଦନ୍ତୀ ଚାଲିଆସିଛି ଯେ ସ୍ୱୟଂ କାଶୀ ବିଶ୍ୱନାଥ ସ୍ୱପ୍ନରେ ପ୍ରକାଶିତ ହୋଇ କହିଥିଲେ .—

"ଅହଂ ବେଦ୍ମି ଶୁକୋ ବେତ୍ତି ବ୍ୟାସୋ ବେତ୍ତି ନ ବେତ୍ତିବା
ଶ୍ରୀଧର ସକଳଂ ବେତ୍ତି ଶ୍ରୀ ନୃସିଂହ ପ୍ରସାଦତଃ ॥"

ଶ୍ରୀଧର ସ୍ୱାମୀଙ୍କ ଦ୍ୱାରା ପୂଜିତ ନୃସିଂହ ମୂର୍ତ୍ତି ଆଜି ମଧ୍ୟ କପିଳାସ ଯାଜ୍ଞସେନୀ ଦେବୀଙ୍କ ମୂର୍ତ୍ତିର ଏକ ପାର୍ଶ୍ୱରେ ସ୍ଥାପିତ । ଶ୍ରୀ ନୃସିଂହଙ୍କ ଅଙ୍କରେ ମହାଲକ୍ଷ୍ମୀ ବିରାଜମାନା ଶ୍ରୀଧରଙ୍କ ଭାଷାରେ, "ଲକ୍ଷ୍ମୀ ଯସ୍ୟତ ବକ୍ଷସୀ" ର ଲକ୍ଷ୍ମୀ ମୂର୍ତ୍ତି ଦ୍ୱିଭୂଜା । ଶ୍ରୀଧରଙ୍କ ପରବର୍ତ୍ତୀ ସନ୍ୟାସୀ ମାନେ ଲକ୍ଷ୍ମୀ-ନୃସିଂହଙ୍କର ଯୁଗଳ ଉପାସନା କରିଥାନ୍ତି । ଓଡ଼ିଶାରେ ବିଶେଷତଃ ଢେଙ୍କାନାଳରେ ବ୍ରାହ୍ମଣ ମାନଙ୍କର ଗୃହରେ ଶ୍ରୀ ଲକ୍ଷ୍ମୀ ନୃସିଂହ ବା ଶ୍ରୀ ଲକ୍ଷ୍ମୀନାରାୟଣ ଉପାସନା ବିଶେଷ ଭାବେ ପ୍ରଚଳିତ । ଢେଙ୍କାନାଳର ରାଜଗୁରୁ କିମ୍ବା ମଠାଧୀଶ ବ୍ରହ୍ମଚାରୀ ମାନଙ୍କର ଲକ୍ଷ୍ମୀ-ନୃସିଂହ ହିଁ ପରମେଶ୍ୱର ରୂପେ ଉପାସ୍ୟ ।

ମାର୍ଗଶୀର ମାସ ଗୁରୁବାର ଗୁଡ଼ିକ ଲକ୍ଷ୍ମୀପୂଜା ପାଇଁ ପ୍ରସିଦ୍ଧ । ଏହି ଗୁରୁ ବା 'ମାଣ' ପୂଜା ପାଳନରେ ଗୃହିଣୀ ମାନେ ପ୍ରତ୍ୟୁଷରେ ସୂର୍ଯ୍ୟୋଦୟ ପୂର୍ବରୁ ଉଠି, ଶୌଚାଦି ସମାପନ କରି; ପ୍ରଥମେ ସମସ୍ତ ଘର, ଦ୍ୱାର ଅଗଣା ଆଦି ସଫାକରି, ଗୋବର ପାଣି ଛିଞ୍ଚି, ପୂଜା ଘର, ରୋଷ ଘର, ଘର କାନ୍ଥ ବାଡ଼ ଆଦିରେ ଗୋବରପାଣି ଲିପିଥାନ୍ତି । ଅରୁଆ ଚାଉଳ ବାଟି, ସେଥିରେ ଦାଣ୍ଡ, ପିଣ୍ଡା, ଘର କାନ୍ଥବାଡ଼ର କିୟଦଂଶ ଡାଳ, ପତ୍ର, ଫଳ, ଫୁଲ ଓ ଲକ୍ଷ୍ମୀ ପାଦର ଚିତା ପକାଇ ସୁନ୍ଦର ଭାବେ ଶୋଭିତ କରିଥାନ୍ତି । କାନ୍ଥରେ କବାଟରେ ଝୋଟି ଆଙ୍କିଥାନ୍ତି । ଲକ୍ଷ୍ମୀଙ୍କ ପୂଜା ଘରେ ଲକ୍ଷ୍ମୀ ବିଜେ କରିବା ସ୍ଥାନରେ ଅଙ୍କା ହୋଇଥାଏ ଗୋଟିଏ ବଡ଼ ପଦ୍ମ ଫୁଲ । ଏହା ଉପରେ ରଖାଯାଏ ଲକ୍ଷ୍ମୀ ବିଜେ କରିବା ସିଂହାସନ, ଖଟୁଲି, ଆସନ ବା ଚନ୍ଦ୍ରରୂପ ସରଞ୍ଜାମ । ଚାରିପାଖେ ଶୋଭିତ ହୋଇଥାଏ ଲକ୍ଷ୍ମୀଙ୍କ

ପାଦ ଚିହ୍ନ । ଏହି ଚାଟ ଗୁଡିକ ଓଡ଼ିଆ କଳାକାରଙ୍କର ସୂକ୍ଷ୍ମ ଚିତ୍ରକଳାର ଏକ ନିଦର୍ଶନ ।

ସାଧାରଣ ପୂଜା ସାମଗ୍ରୀ ବ୍ୟତୀତ ଏହି ମାଣବସା ପୂଜାରେ ଆବଶ୍ୟକ ହୁଏ ପିତ୍ତଳ ବର୍ଣ୍ଣର ପୂଜା ମାଣ ବା ଗୋଟିଏ ନୂଆ ମାଣ । ଏଥିରେ ସିନ୍ଦୂର ଚନ୍ଦନ ଲଗାଇ, ଶୁକ୍ଳ ଧାନରେ ପୂରଣ କରାଯାଏ । ନୂଆ ଧାନ ହେଲେ ଭଲ, ଯଦି ନୂଆ ଧାନ ମିଳି ନଥାଏ, ତେବେ ଦ୍ୱିତୀୟ ବା ତୃତୀୟ ପାଳି ପୁଣି ନୂଆ ଧାନ ଦିଆଯାଏ । ଏହା ଉପରେ ହଳଦୀ ପାଣି ବୋଳା ହୋଇଥିବା ଗୋଟିଏ ଗୋଟା ଗୁଆରେ ସିନ୍ଦୂର ଚନ୍ଦନ ଲଗାଇ ରଖାଯାଏ ଏବଂ ତା ଉପରେ ଗୋଟିଏ ଶୁକ୍ଳ ଧାନର ବେଣ୍ଟି ରହେ । କେତେକ ସ୍ଥାନରେ ନୂଆ ମୁଗ, ଧାନ ଆଦି ଶସ୍ୟ ମାନ ମଧ୍ୟ ମାଣ ବା ପାତ୍ରରେ ପୂର୍ଣ୍ଣ କରି ରଖାଯାଏ । ଅନ୍ୟ ଦେବାଦେବୀଙ୍କ ପରି ପୂଜା ବିଧିରେ ଧୂପ, ଦୀପ, ଗନ୍ଧ, ଚନ୍ଦନ ଆଦି ଦେଇ ପୂଜା କରାଯାଏ । ଲକ୍ଷ୍ମୀ ପୂଜାରେ ତିନିଥର ଭୋଗ ଲାଗେ । ପ୍ରଥମ ଥର ଫଳମୂଳ, ଦ୍ୱିତୀୟ ଥର ଶାଂଖୁଡ଼ି ଏବଂ ପରେ ମଣ୍ଡା ପିଠା । ଏ ଭୋଗ ସାଧାରଣତଃ କାହାରିକୁ ବଣ୍ଟନ କରାଯାଏ ନାହିଁ । ତହିଁ ଆରଦିନ ଲକ୍ଷ୍ମୀ ଦେବୀଙ୍କୁ ଗୁରୁବାର ଆସ୍ଥାନକୁ ଉଠାଇ ଦୈନନ୍ଦିନ ସ୍ଥାନକୁ ନିଆଯାଏ । ଲକ୍ଷ୍ମୀ ମୂର୍ତ୍ତି ଅଭାବରେ ଗୋଟା ଗୁଆରେ ଆବାହନ କରି ଲକ୍ଷ୍ମୀ ମୂର୍ତ୍ତିର କଳ୍ପନା କରାଯାଇଥାଏ । ପୂଜାରେ ଲକ୍ଷ୍ମୀ ପୁରାଣ ବା ମାଣବସା ପୋଥି ପାଠ କରାଯାଏ । ଆମ ଦେଶରେ ବହୁ ବ୍ରତ, ଓଷାକୁ ଜନପ୍ରିୟ, ରୁଚିକର ଓ ଚିତ୍ତାକର୍ଷକ କରିବା ପାଇଁ ଗୋଟିଏ କାହାଣୀ ମାଧ୍ୟମରେ ପୋଥି ମାନ ଲେଖା ହୋଇଅଛି । ଓଡ଼ିଶାରେ ଜଗନ୍ନାଥ ସଂସ୍କୃତିର ପ୍ରାଧାନ୍ୟ ଯୋଗୁଁ 'ମାଣବସା' ବ୍ରତର ବିଷୟବସ୍ତୁ ଶ୍ରୀ ଜଗନ୍ନାଥ ଓ ଲକ୍ଷ୍ମୀ କୈନ୍ଦ୍ରିକ । ଘରେ ଘରେ ଏ ପୂଜାର ପ୍ରଚଳନ ଥିବାରୁ ସବିଶେଷ ବିବରଣୀ ଲେଖିବା ଅନାବଶ୍ୟକ ।

ଓଁ ପାଶାକ୍ଷ ମାଳିକାମ୍ଭୋଜ ସୃଣିଭିର୍ଯ୍ୟାମ୍ୟ ସୌମ୍ୟୟୋଃ ।
ପଦ୍ମାସନସ୍ଥାଂ ଧ୍ୟାୟେଚ୍ଚ ଶ୍ରିୟଂ ତ୍ରୈଲୋକ୍ୟ ମାତରମ୍ ॥
ଗୌରବର୍ଣ୍ଣାଂ ସୁରୂପାଞ୍ଚ ସର୍ବାଳଙ୍କାର ଭୂଷିତାମ୍ ।
ରୌକ୍ମପଦ୍ମ-ବ୍ୟଗ୍ରକରାଂ ବରଦା-ଦକ୍ଷିଣେନ ତୁ ॥

— * —

## କୈବଲ୍ୟ ବଜାର

# ଲକ୍ଷ୍ମୀପୂଜା ଇତିକଥା

ଶ୍ରୀ ସଚ୍ଚିଦାନନ୍ଦ ଦାଶ

ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ । କୃଷିକୁ ଭିତ୍ତିକରି ଓଡ଼ିଶାରେ ଭିନ୍ନ ଭିନ୍ନ ପର୍ବପର୍ବାଣି ମାନ ପାଳିତ ହୋଇଥାଏ । ଏହି ପର୍ବ-ପର୍ବାଣି ମଧ୍ୟରୁ ଆମର ଧର୍ମ, ସଂସ୍କୃତି, ଆଚାର, ବିଚାର ପ୍ରଭୃତି ସମ୍ପର୍କରେ ବହୁ ତଥ୍ୟ ମିଳିଥାଏ ।

ହିନ୍ଦୁ ପରିବାରରେ ଧନର ଅଧିଷ୍ଠାତ୍ରୀ ଦେବୀ ରୂପରେ ମା' ଲକ୍ଷ୍ମୀ ପୂଜିତା ହୁଅନ୍ତି । ସେ ହେଉଛନ୍ତି ଧନ, ଧାନ୍ୟ ତଥା ସୌଭାଗ୍ୟର ଦେବୀ । ହିନ୍ଦୁର ଅନ୍ୟ ଦେବା ଦେବୀ ମାନଙ୍କ ପରି ମା' ଲକ୍ଷ୍ମୀଙ୍କର ଅଜ୍ଞାତ ଓ ଜନ୍ମ ବୃତ୍ତାନ୍ତ ରହସ୍ୟମୟ ଓ କୌତୁହଳ ପୂର୍ଣ୍ଣ । ସ୍ୱର୍ଗରେ ସେ ସ୍ୱର୍ଗ ଲକ୍ଷ୍ମୀ, ରାଜାଙ୍କ ପାଖରେ ସେ ରାଜଲକ୍ଷ୍ମୀ, ବଣିକ ନିକଟରେ ବାଣିଜ୍ୟ ଲକ୍ଷ୍ମୀ, ଯୁଦ୍ଧର ବିଜେତା ପାଖରେ ବିଜୟ ଲକ୍ଷ୍ମୀ ଓ ପରିବାରରେ ସେ ଗୃହଲକ୍ଷ୍ମୀ । ସେ ବିଷ୍ଣୁ ବଲ୍ଲଭା ମହାଲକ୍ଷ୍ମୀ । ଭଗବାନ ବିଷ୍ଣୁ ଯେପରି ପୁରୁଷୋତ୍ତମ, ମା' ଲକ୍ଷ୍ମୀ ସେପରି ସର୍ବୋତ୍ତମା । ସେ ସମସ୍ତ ଜ୍ଞାନ, ଐଶ୍ୱର୍ଯ୍ୟ, ଶକ୍ତି ଓ ତେଜ ଆଦି ଗୁଣରେ ପରିପୂର୍ଣ୍ଣା ।

ଶରତ ଋତୁ କୁମାର ପୂର୍ଣ୍ଣିମା ତିଥିରେ ଲକ୍ଷ୍ମୀଙ୍କର ପୂଜା ହୁଏ । ସେତେବେଳକୁ ଧରଣୀ ଶସ୍ୟ ଶ୍ୟାମଳା ହୋଇଥାଏ । କୃଷକ ଆଗାମୀ

ଦିନର ଶସ୍ୟ ଉତ୍ପାଦନକୁ ଆଖିରେ ରଖି ମନ ଆନନ୍ଦରେ ଉତ୍ଫୁଲ୍ଲିତ ହୁଏ । ଏହି ଅବସରରେ କୃଷକ ତଥା ଜନ ସମାଜ ନିଜ ହୃଦୟର ଆବେଦନ ଜଣାଇବା ଲାଗି ମା ଲକ୍ଷ୍ମୀଙ୍କୁ ଆବାହନ କରି ନିଜର ବିନମ୍ର ନିବେଦନ ଜଣାଏ । ଦେଶ, ଗ୍ରାମ, ଅଞ୍ଚଳ ମୁଖରିତ ହୋଇଉଠେ । ମା ଲକ୍ଷ୍ମୀଙ୍କର ବହୁ ପୂଜା ଆରାଧନା ମଧ୍ୟରୁ ଏହି କୁମାର ପୂର୍ଣ୍ଣିମା ଦିନ ପୂଜାକୁ ହିନ୍ଦୁ ସମାଜ ବିଶେଷ ପ୍ରାଧାନ୍ୟ ଦେଇଥାଏ । × × ×

୧୯୪୧ ବା ୧୯୪୨ ମସିହାକୁ ଢେଙ୍କାନାଳରେ ଲକ୍ଷ୍ମୀଙ୍କର ପୂଜା ପ୍ରଥମେ ତତ୍କାଳୀନ ମହିଗଡ଼ ଅର୍ଥାତ୍ ବର୍ତ୍ତମାନର ମିନା ବଜାର ଅଞ୍ଚଳରେ ଆରମ୍ଭ ହୋଇ ଥିବାର ଜଣାଯାଏ । ଏହା ଆଗରୁ ଢେଙ୍କାନାଳରେ ଘରେ ଘରେ ବ୍ୟକ୍ତିଗତ ପ୍ରଚେଷ୍ଟାରେ ମହାଲକ୍ଷ୍ମୀ ପୂଜା ହେଉଥିଲା । ଜନସାଧାରଣଙ୍କ ସହଯୋଗରେ ମହିଗଡ଼ରେ ମୃଣ୍ମୟ ଲକ୍ଷ୍ମୀ ମୂର୍ତ୍ତି ପୂଜିତ ହୋଇ ପ୍ରଥମ କରି ସାର୍ବଜନୀନ ପୂଜାର ଗୌରବ ଲାଭ କଲା । ପରବର୍ତ୍ତୀ ସମୟରେ ଢେଙ୍କାନାଳ ସହରର ବିଭିନ୍ନ ଅଞ୍ଚଳରେ ଲକ୍ଷ୍ମୀଙ୍କର ମୃଣ୍ମୟ ମୂର୍ତ୍ତିର ପୂଜା ଆଡମ୍ବର ସହକାରେ ଆରମ୍ଭ ହୋଇ ସହରଟି କେତେଗୁଡ଼ିଏ ବଜାରରେ ବିଭକ୍ତ ହେଲା । ବହୁ ପ୍ରତିଷ୍ଠିତ ବ୍ୟକ୍ତି, ବ୍ୟବସାୟୀ ଯୁବକ ଲକ୍ଷ୍ମୀଙ୍କର ପୂଜା କରିବାକୁ ଆଗଭର ହେଲେ । ପୂଜା ଦେଖିବାକୁ ପ୍ରତ୍ୟେକ ବର୍ଷ ଜନସମାଗମ ବଢି ଚାଲିଲା । ବ୍ୟବସାୟର ଉନ୍ନତି ହେଲା । ଉଦ୍ୟୋକ୍ତା ମାନଙ୍କ ମଧ୍ୟରେ ଉତ୍ସାହ ବଢିଚାଲିଲା — ଯେତେଦୂର ଜଣାଯାଏ ୧୯୫୭ ମସିହା ବେଳକୁ ସହରରେ ବିଭିନ୍ନ ଅଞ୍ଚଳରେ ପ୍ରାୟ ୧୫ଟି ପୂଜା ପ୍ରତିଷ୍ଠାନରେ ଲକ୍ଷ୍ମୀପୂଜା ଆରମ୍ଭ ହୋଇ ସାରିଥିଲା ।

ଢେଙ୍କାନାଳ ସହରର ଦକ୍ଷିଣ-ପଶ୍ଚିମ ଅଞ୍ଚଳକୁ ମୁଖ୍ୟତଃ ଜୁବୁଲି ଟାଉନ ଅଞ୍ଚଳ କୁହାଯାଏ । ଏହି ସୀମା ମଧ୍ୟରେ ଜେଲର ଚତୁଃପାର୍ଶ୍ୱ, ଡାଇକସାଇ ବଳଦେବଜୀଉ ମନ୍ଦିର ଚତୁଃପାର୍ଶ୍ୱ, ଦେଉଳ ସାଇ, ଅଟକୁଲି ସାଇ, ତଉଁଲା ସାଇ ଏବଂ ଘାସପୁର ବସ୍ତିର ଉଭୟ ପାର୍ଶ୍ୱ ପ୍ରଭୃତି ଅନ୍ତର୍ଭୁକ୍ତ । ଉକ୍ତ ଜବୁଲି ଟାଉନ ଅଞ୍ଚଳର କେତେକ ଉତ୍ସାହୀମାନ ଯୁବକ ୧୯୫୮ ମସିହାରେ ଜେଲ ଛକ ଠାରେ

ଥିବା କଦମ୍ବ ଗଛ ମୂଳରେ ଲକ୍ଷ୍ମୀଙ୍କର ମୃଣ୍ମୟ ମୂର୍ତ୍ତି ସ୍ଥାପନ କରି ପୂଜା ଆରାଧନା କରିବାର ନିଷ୍ପତ୍ତି ନେଇଥିଲେ । କିନ୍ତୁ ଜୁବୁଲି ଟାଉନର ଅନ୍ୟ କେତେକ ବାସିନ୍ଦା ଉକ୍ତ ପୂଜାକୁ ମହାନ୍ତି ଆପାର୍ଟ-ଘଡ଼ିଘର ରାସ୍ତା ଛକରେ ସେହି ୧୯୫୮ ମସିହାରେ ଆରମ୍ଭ କଲେ । ସେହି ପୂଜା ପ୍ରତିଷ୍ଠାନର ନାମ ଜୁବୁଲି ଟାଉନ- ୧ ରହିଅଛି । ପୁନର୍ବାର ଦେଉଳି ମାଇ ପାଇକ ସାହି ଅଞ୍ଚଳର ଉତ୍ସାହୀମାନ ଯୁବକ ମାନେ ମିଳିତ ହୋଇ ଶ୍ରୀ ଶ୍ରୀ ବଳଦେବଜୀଉ ମନ୍ଦିରର ଉତ୍ତର ପାର୍ଶ୍ୱ ବେଢ଼ା ସନ୍ନିକଟ ଏକ ଖୋଲା ସ୍ଥାନରେ ଅସ୍ଥାୟୀ ଘରେ ମା' ଲକ୍ଷ୍ମୀଙ୍କର ମୃଣ୍ମୟ ମୂର୍ତ୍ତି ପୂଜା ଆରମ୍ଭ କଲେ । ଏଥିରେ ମୁଖ୍ୟତଃ ସ୍ୱର୍ଗତ ମହାଦେବ ପଣ୍ଡା, ସ୍ୱର୍ଗତ ଯୋଗେନ୍ଦ୍ର ମହାପାତ୍ର, ସ୍ୱର୍ଗତ ସଚ୍ଚିଦାନନ୍ଦ ଜେନା, ଶ୍ରୀ ଗଗନ ବିହାରୀ ନନ୍ଦ, ଶ୍ରୀ ବିନୋଦ ବିହାରୀ ଜେନା ଶ୍ରୀ ସୁରେନ୍ଦ୍ର କୁମାର ଶତପଥି, ଶ୍ରୀ ସଚ୍ଚିଦାନନ୍ଦ ଦାଶ ପ୍ରମୁଖ ଭାଗ ନେଇଥିଲେ । ସେମାନଙ୍କ ତତ୍ପରତା ଓ ଉଦ୍ଦୀପନା ଫଳରେ ମା ଲକ୍ଷ୍ମୀଙ୍କର ପୂଜା ଆରାଧନା ହୋଇଥିଲା । ଉକ୍ତ ପୂଜା ଅନୁଷ୍ଠାନର ନାମ ଥିଲା "ଦେଉଳ ସାହି" ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ ଏବଂ ମିଳିତ ଶୋଭାଯାତ୍ରାରେ ଏହାର କ୍ରମିକ ନମ୍ବର ସତର ଥିଲା । ପରବର୍ତ୍ତି ସମୟରେ ଉକ୍ତ ପୂଜା ଆସ୍ଥାନର ନାମକରଣ କେଉଁଝର ବଜାର **ମହାଲକ୍ଷ୍ମୀ ପୂଜା ପ୍ରତିଷ୍ଠାନ** ହେଲା । ୧୯୬୦ ବା ୧୯୬୧ରେ ସେତେବେଳର ଯୁବରାଜ ଶ୍ରୀ କାମାକ୍ଷା ପ୍ରସାଦ ସିଂହଦେଓ ଉକ୍ତ ପୂଜା ପ୍ରତିଷ୍ଠାନର ସଭାପତି ଭାବେ ନିର୍ବାଚିତ ହେଲେ ଏବଂ ବର୍ତ୍ତମାନ ସେ ଉକ୍ତ ଆସନ ଅଳଂକୃତ କରି ଏହାର ମୁଖ୍ୟ ଅଛନ୍ତି । କଟକର ଶିଳ୍ପୀ ଶ୍ରୀ ଦାମୋଦର ମହାରଣା ପୂଜା ଆରମ୍ଭ ଦିନ ଠାରୁ କେଉଁଝର ବଜାର ଲକ୍ଷ୍ମୀ ମେଢ଼ ତିଆରି କରି ଆସୁଛନ୍ତି । ତାଙ୍କର ଶିଳ୍ପ ନୈପୁଣ୍ୟ ଯୋଗୁଁ ଉକ୍ତ ଲକ୍ଷ୍ମୀପୂଜା ଅନୁଷ୍ଠାନର ମୂର୍ତ୍ତି ଓ ସାଜସଜ୍ଜା ଜନସାଧାରଣଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେବାର ଗୌରବ ଲାଭ କରି ପାରୁଅଛି ।

ବର୍ତ୍ତମାନ ଏହାର ନିଜସ୍ୱ ପକ୍କା ଘର ତିଆରି ହେଲାଣି । ସହରରେ ପ୍ରତିଷ୍ଠିତ ଶୃଙ୍ଖଳିତ ପୂଜା ଆସ୍ଥାନ ଭାବରେ ଏହାର ସୁନାମ ଅଛି । ଅତୀତରେ ସହରର ପ୍ରତ୍ୟେକ ପୂଜା ଅନୁଷ୍ଠାନ ମଧ୍ୟରେ

ସ୍ନେହ, ସୌହାର୍ଦ୍ଦ୍ୟପୂର୍ଣ୍ଣ ଏକ ବାତାବରଣ ଥିଲା । ସେତେବେଳେ ପ୍ରତ୍ୟେକ ପୂଜା ଅନୁଷ୍ଠାନ, ଅନ୍ୟ ପୂଜା ଅନୁଷ୍ଠାନକୁ ଖୋଳ, କରତାଳ, ଭୋଗ ଧରି, ସଂକୀର୍ତ୍ତନ କରି ପୂଜା ସମୟରେ ଦିନେ ତାଙ୍କର ମହାଲକ୍ଷ୍ମୀଙ୍କୁ ଶଙ୍ଖୋଳି ଆସିବାର ପରମ୍ପରା ଥିଲା । ସେହିପରି ଅନ୍ୟ ପୂଜା-ଅନୁଷ୍ଠାନ ମାନେ କୈବର୍ତ୍ତ ବଜାର ମହାଲକ୍ଷ୍ମୀଙ୍କୁ ମଧ୍ୟ ଖୋଳ କରତାଳ ଧରି ଶଙ୍ଖୋଳି ଯାଉଥିଲେ । ଏହା ଫଳରେ ସୌହାର୍ଦ୍ଦ୍ୟ ସୃଷ୍ଟି ହେଉଥିଲା । ବର୍ତ୍ତମାନ ସେ ପ୍ରଥା ଏବକୁ ଆଉ ନାହିଁ । ଯଦିଓ ସାମାନ୍ୟ ଛାପା ନିମନ୍ତ୍ରଣ ମାଧ୍ୟମରେ କେତେକ ପୂଜା ଅନୁଷ୍ଠାନ ପରସ୍ପର ସହିତ ସୌହାର୍ଦ୍ଦ୍ୟ ବଜାୟ କରୁଅଛନ୍ତି । ଆଶାକରାଯାଏ ଯେ, ଏହି ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ସିଳାର ମହାଲକ୍ଷ୍ମୀ କମିଟି ଫେରାଇ ଆଣିଲେ ସହରରେ ୧୧ ଦିନ ଧରି ପାଳିତ ହେଉଥିବା ମହାଲକ୍ଷ୍ମୀ ପୂଜା ଆହୁରି ଶୃଙ୍ଖଳିତ ହୋଇପାରନ୍ତା । କଟକର ଦଶହରା, ବ୍ରହ୍ମପୁରର ଠାକୁରାଣୀ ଯାତ୍ରା, ବରଗଡ଼ର ଧନୁଯାତ୍ରା ପରି ଢେଙ୍କାନାଳର ମହାଲକ୍ଷ୍ମୀ ପୂଜା ଏକ ସାର୍ବଜନୀନ ପୂଜାରେ ପରିଣତ ହେଲାଣି । ଏହାରି ଜନ ସାଧାରଣ ଓ ଲୋକପ୍ରିୟ ପୂଜା ଓଡ଼ିଶାରେ ଅନନ୍ୟ ବିରଳ । ଏହି ସମୟରେ ଢେଙ୍କାନାଳ ସହର କାଠଗଡ଼ା ଠାରୁ ଗୋଲାଇଁ ପର୍ଯ୍ୟନ୍ତ ପ୍ରାୟ ୯ କିଲୋମିଟର ବ୍ୟାପୀ ରାସ୍ତା ଜନ ସମାଗମରେ ଏକ ହୋଇ-ଯାଏ । ମୋଟଉପରେ ଶରତଋତୁ ଆଗମନରେ ଆଗାମୀ ବର୍ଷର ଫସଲ ଲାଭର ଆକାଙ୍କ୍ଷା ନେଇ ଲକ୍ଷ୍ମୀଦେବୀଙ୍କର ପୂଜା ଅତି ଉଲ୍ଲାସ ମନରେ ସମ୍ପାଦିତ ହୁଏ । ଏହି ମହାଲକ୍ଷ୍ମୀ ପୂଜା ସଂସ୍କୃତି କାଳ କାଳ ଧରି ଶାଶ୍ୱତ ଆଦର୍ଶ ହୋଇ ରହି ଆସିଅଛି । କାଳ କାଳକୁ ଏହା ଅମ୍ଳାନ ହୋଇ ରହିଥିବ ବୋଲି ବିଶ୍ୱାସ ।

"ଓଁ ନମସ୍ତେ ସର୍ବ ଦେବାନାଂ ବରଦାସି ହରିପ୍ରିୟେ
ଯାଗତିସ୍ତ୍ୱଂ ପ୍ରପନ୍ନାଂ ସାମେ ଭୂୟାତ୍ତ୍ୱଦର୍ଚ୍ଚନା ।"

—o—

# ଜବାହାରଚୌକ ଲକ୍ଷ୍ମୀପୂଜା

ଶ୍ରୀ ଉଦୟନାଥ ମହାପାତ୍ର

ସମ୍ପଦ ଓ ସୌଭାଗ୍ୟର ସ୍ରଷ୍ଟାକ ପରମାରାଧ୍ୟା ଦେବୀ ମହାଲକ୍ଷ୍ମୀ ପ୍ରତ୍ୟେକ ହିନ୍ଦୁ ପରିବାରରେ ଗୃହଦେବୀ ଭାବରେ ପୂଜିତା । ମହାଲକ୍ଷ୍ମୀଙ୍କର ବହୁ ପୂଜା ବ୍ରତ ଉତ୍କଳରେ ପାଳିତ ହୁଏ । ତନ୍ମଧ୍ୟରୁ କୁମାର ପୂର୍ଣ୍ଣିମା ଦିନ ଗଜଲକ୍ଷ୍ମୀ ପୂଜା ପ୍ରଧାନ ବୋଲି କୁହାଯାଏ । କାରଣ ସେଦିନ ମହାଲକ୍ଷ୍ମୀ ଜନ୍ମଗ୍ରହଣ କରିଥିଲେ । ଢେଙ୍କାନାଳରେ ମହାଲକ୍ଷ୍ମୀଙ୍କର ଏହି ଜନ୍ମ ଦିବସକୁ କେନ୍ଦ୍ର କରି ଲକ୍ଷ୍ମୀପୂଜା ପ୍ରତିବର୍ଷ ସହରର ବହୁ ସ୍ଥାନରେ ପାଳିତ ହୋଇଥାଏ । ଉକ୍ତ ପୂଜା ଅନୁଷ୍ଠାନ ମାନଙ୍କ ମଧ୍ୟରେ ଜବାହାରଚୌକ ଲକ୍ଷ୍ମୀପୂଜା ଅନୁଷ୍ଠାନ ଅନ୍ୟତମ ।

ଜବାହାର ଚୌକର ଲକ୍ଷ୍ମୀ ପୂଜା ଇତିହାସ ଆଲୋଚନା କରିବାକୁ ଗଲେ, ୧୯୪୦ ମସିହା ପଛକୁ ଫେରିଯିବାକୁ ହେବ । ଏହି ଜବାହାର ଚୌକ ଅଞ୍ଚଳକୁ ପୂର୍ବେ ସାଆନ୍ତ ସାହି କହନ୍ତି । ଏହି ସାହିର ସଚ୍ଚିଦାନନ୍ଦ ସିଂହଙ୍କର ଉଚ୍ଚକୋଟୀର ନାଟକ, ସଙ୍ଗୀତ ପ୍ରଭୃତି ପ୍ରତି ବିଶେଷ ଆଦର ଥିଲା । ତାଙ୍କର ପ୍ରେରଣାରେ ସାହିର କେତେକ ଯୁବକ ଏକତ୍ରିତ ହୋଇ ସମୟେ ସମୟେ ନାଟକ ମାନ ପରିବେଷଣ କରନ୍ତି । ତାଙ୍କର ନିଜର ଘରେ ସେ ଲକ୍ଷ୍ମୀପୂଜା କରନ୍ତି । ଯେତେ ଦୂର ମନେପଡ଼େ ୧୯୫୦ ମସିହା ବେଳକୁ ତାଙ୍କ ଘରେ କୁମ୍ଭ ସ୍ଥାପନ କରି ଲକ୍ଷ୍ମୀଙ୍କର ପୂଜା ଆରାଧନା କରାଯାଉଥିଲା । ସେ ଉପଲକ୍ଷେ ସାହି

ପିଲମାନେ ତାଙ୍କର ଘର ନିକଟରେ ନାଟକ ପରିବେଷଣ କରୁଥିଲେ । ୧୯୪୨ ବେଳକୁ କୁମ୍ଭ ସ୍ଥାପନ ପଞ୍ଜବରେ ତାଙ୍କର ଚଉପାଡି ଠାରେ ମାଟିର "ଲକ୍ଷ୍ମୀ ମୂର୍ତ୍ତି" ଓ କାଗଜର ମେଢ ତିଆରି କରାଯାଇ ପୂଜା କରାଯାଇ ଥିବାର ମନେହୁଏ । ସେଠାକୁ ମଧ୍ୟ ଏହି ଉପଲକ୍ଷେ ସହରର ବିଶିଷ୍ଟ ଗଣ୍ୟମାନ୍ୟ ବ୍ୟକ୍ତି ମାନଙ୍କୁ ଉତ୍ସବ ଦେଖିବାଲାଗି ନିମନ୍ତ୍ରଣ କରାଯାଏ । ଏହିପରି ୧୯୪୪ ଯାଏ କୁମାର ପୂର୍ଣ୍ଣିମା ଦିନ ମାଟିର ଲକ୍ଷ୍ମୀ ମୂର୍ତ୍ତି କରାଯାଇ ପୂଜା ହେଉଥିଲା । ଏହି ଉପଲକ୍ଷେ ମଧ୍ୟ ଲେଖକଙ୍କ ସମେତ ସହରର ତତ୍କାଳୀନ ଯୁବକ ମାନେ ପ୍ରତିବର୍ଷ ନାଟକ ପରିବେଷଣ କରିବା ଲାଗି ବିଭିନ୍ନ ପୌରାଣିକ ନାଟକ ମାନଙ୍କର ପାର୍ଟ ମୁଖସ୍ଥ କରୁଥିଲେ । ସଚ୍ଚି ବାବୁଙ୍କର ୧୯୪୫ ମସିହାରେ ତିରୋଧାନ ହୋଇଯିବା ଫଳରେ ସେ ବର୍ଷ ପୁଣି ଘଟ ପୂଜା ଦ୍ୱାରା ମହାଲକ୍ଷ୍ମୀଙ୍କର ପୂଜା ପାଳିତ ହେଲା ।

୧୯୪୬ ମସିହାରେ କୁମାର ପୂର୍ଣ୍ଣିମା ପୂର୍ବରୁ ସଚ୍ଚି ବାବୁଙ୍କର ସ୍ତ୍ରୀ (ବାବୁପ୍ରାଣୀ), ତାଙ୍କ ସ୍ୱାମୀଙ୍କ ଦ୍ୱାରା ନିର୍ମିତ ହୋଇଥିବା ରାଧାକୃଷ୍ଣ ମନ୍ଦିର ପ୍ରାଙ୍ଗଣରେ ସହରର ବିଶିଷ୍ଟ ବ୍ୟକ୍ତି ଓ ଯୁବକ ମାନଙ୍କୁ ଡ଼କାଇ ସେହି ବର୍ଷ ଲକ୍ଷ୍ମୀପୂଜା ସମ୍ପର୍କରେ ଆଲୋଚନା କରିଥିଲେ । ବାବୁପ୍ରାଣୀ-ଙ୍କର ଆର୍ଥିକ ସାହାଯ୍ୟ ଏବଂ ସହରର ମୁଖିଆ ଲୋକ ମାନଙ୍କ ସହଯୋଗ-ରେ ସେ ବର୍ଷ ସଚ୍ଚି ବାବୁଙ୍କ ଚଉପାଡି ଘରେ ମାଟିର ଏକ ବଡ ଲକ୍ଷ୍ମୀ-ମୂର୍ତ୍ତି କରାଯାଇ ପୂଜା ଆରମ୍ଭ ହେଲା । କାଗଜ ତିଆରି ଗୋଟିଏ ମେଢ ମଧ୍ୟ ହୋଇଥିଲା । ଉକ୍ତ ପୂଜାକୁ ସଫଳ କରିବା ଲାଗି ସଚ୍ଚି-ବାବୁଙ୍କର ଅନ୍ତରଙ୍ଗ ବନ୍ଧୁ ସ୍ୱର୍ଗୀୟ ନାରାୟଣ ଦାସ ଜଗଜୀବନ ଏବଂ ସ୍ୱର୍ଗୀୟ ଗିରିଧାରୀ ଦାସ ପ୍ରମୁଖ ସହରର ବିଶିଷ୍ଟ ଲୋକମାନେ ଆଗଭର ହୋଇଥିଲେ ।

ସେତେବେଳକୁ ଶ୍ରୀ ନଟବର ଦେବତା ପ୍ରମୁଖଙ୍କ ର ସହଯୋଗରେ ମହି ଗଡରେ ମାଟିର ଲକ୍ଷ୍ମୀ ମୂର୍ତ୍ତି ପୂଜା ଆରମ୍ଭ ହୋଇ ଥାଏ । ତେଣୁ ମହିଗଡ ଓ ସାଆନ୍ତ ସାହିର ଯୁବକ ମାନଙ୍କ ମଧ୍ୟରେ ଆଲୋଚନା ହୋଇ ୧୯୪୬ ରୁ ସର୍ବପ୍ରଥମ ଦୁଇଟିଯାକ ମେଢ ରାତକୁ

ଆଲୁଅ ଧରି ଓ ବାଜା ବଜାଇ ଭସାଣି ଶୋଭାଯାତ୍ରାରେ ବଳରାମ ମନ୍ଦିର ଦେଇ ରାଜବାଟିକୁ ଯାଉଥିଲେ । ଉକ୍ତ ଶୋଭାଯାତ୍ରାରେ ମନ୍ଦିଗଞ୍ଜ (ମିନା ବଜାର) ଆଗରେ ଏବଂ ତା ପଛରେ ସାଆନ୍ତ ସାହି ମେଢ଼ ଯାଉଥିବାର ମନେଅଛି । ସେହି ବର୍ଷ ମଧ୍ୟ ସାଆନ୍ତ ସାହି ଯୁବକ ମାନେ ନାଟକ ପରିବେଷଣ କରିଥିଲେ । ଓ ଉତ୍ସବ ଲକ୍ଷ୍ମୀପୂଜା ପାଞ୍ଚ ଦିନ ଯାଏ ହୋଇଥିଲା । ଲକ୍ଷ୍ମୀପୂଜା ମାନ ଦେଖି ଜୁବୁଲି ମାର୍କେଟ (ଲକ୍ଷ୍ମୀ ବଜାର) ଅଞ୍ଚଳର ବ୍ୟବସାୟୀ ସ୍ୱର୍ଗୀୟ ସାମନ୍ତ ଜଗଜୀବନ, ଶ୍ରୀ ଅନାଦି ଦୋରା, ଶ୍ରୀ ବୈରାଗୀ ସାମଲ ପ୍ରଭୃତିଙ୍କର ସହଯୋଗରେ ୧୯୪୮ ମସିହାରେ ଜୁବୁଲି ମାର୍କେଟ ସାଇ ଲକ୍ଷ୍ମୀ ଦେବୀଙ୍କର ପୂଜା ଆରମ୍ଭ ହେଲା । ଉକ୍ତ ଲକ୍ଷ୍ମୀମୂର୍ତ୍ତି ଶୋଭାଯାତ୍ରାରେ ୩ ନମ୍ବରରେ ଗଲା । ସେ ବର୍ଷ ୭ ଦିନ ଯାଏ ପୂଜା ହୋଇଥିବାର ମନେପଡ଼ୁଛି । ଯାହା ମନେପଡ଼େ ଠାକୁରାଣୀ ମାନଙ୍କର ବିସର୍ଜନ ସିମିଳିଆ ପୋଖରୀରେ ହେଉଥିଲା । ୧୯୫୦ ମସିହାରୁ ବାବୁପୁଣ୍ଡୀଙ୍କର ଦେହାନ୍ତ ହେଲା । ଫଳରେ ସନ୍ଧି ବାବୁଙ୍କ ଦାଣ୍ଡପାଣ୍ଡିରେ ଲକ୍ଷ୍ମୀପୂଜା କରିବା ସମ୍ଭବପର ହେଲାନାହିଁ । ସାହି ବାସିନ୍ଦା ମାନଙ୍କର ଉତ୍ସାହ ଉଦ୍ଦୀପନା ଯୋଗୁଁ ୧୯୫୦ ମସିହାରେ ସ୍ୱର୍ଗୀୟ ଭବଗ୍ରାହୀ ଦାସଙ୍କ ଯାଗାରେ ଜାଗାସୁ ରାଜପଥ ପାର୍ଶ୍ୱରେ ଗୋଟିଏ ଫୁଲଘର ତିଆରି ହୋଇ ଲକ୍ଷ୍ମୀପୂଜା ହେଲା । ସାହି ବାସିନ୍ଦା ମାନଙ୍କୁ ନେଇ ଲକ୍ଷ୍ମୀ ଲକ୍ଷ୍ମୀପୂଜା କମିଟି ଗଢ଼ାହେଲା । ସେଥିରେ ସ୍ୱର୍ଗୀୟ ଭବଗ୍ରାହୀ ଦାସ ସଭାପତି, ସ୍ୱର୍ଗତ ନାରାୟଣଦାସ ଜଗଜ୍ଜୀବନ ଉପ-ସଭାପତି, ସ୍ୱର୍ଗୀୟ ନବକିଶୋର, ସ୍ୱାଇଁ ସମ୍ପାଦକ ଏବଂ ଶ୍ରୀ ଉଦୟନାଥ ମହାପାତ୍ର (ଲେଖକ) କୋଷାଧ୍ୟକ୍ଷ ରହିଲେ । ସାହିର ସବୁ ପରିବାରଙ୍କ ଠାରୁ ପୂଜା ପାଳନ ପାଇଁ ସେହି ବର୍ଷ ଠାରୁ ଚାନ୍ଦା ଆଦାୟ ହେଲା । ସେତେବେଳକୁ ଉତ୍ତରଗଞ୍ଜ (ଗଣେଶ ବଜାର) ଲକ୍ଷ୍ମୀପୂଜା ଆରମ୍ଭ ହୋଇ ସାରିଥିଲା । ୧୯୫୦ ମସିହାରୁ ମହାଜାର ଲକ୍ଷ୍ମୀପୂଜା ଆନୁଷ୍ଠାନରେ ତାଙ୍କର ପୂଜା ଆରମ୍ଭ କଲେ । ଲକ୍ଷ୍ମୀ ମୂର୍ତ୍ତି ଗୁଡିକ ସେତେବେଳକୁ ନିଜ ନିଜର ଅଧିକ ନମ୍ବର ନେଇ ରାମ କାଳରେ ଶୋଭାଯାତ୍ରାରେ ଯିବାର ବିଧି ଆରମ୍ଭ ହୋଇ ସାରିଥାଏ । ବହୁ ସଂଖ୍ୟାରେ ଲୋକ ତାହା ଦେଖିବାକୁ ମଫସଲରୁ ଆସୁଥିଲେ । ଏହି ରାତି ଭସାଣି ଉତ୍ସବକୁ

ନେଉଥିବାର ଅନେକ ୧୯୫୨ ମସିହାରୁ ବନ୍ଦକରି ଦିଆଯାଇ ଥିଲ
ବେଳା ଭସାଣି ଶୋଭାଯାତ୍ରା ହେଲା ଏବଂ ଠାକୁରାଣୀ ମାନଙ୍କୁ କାଠ-
ଶଙ୍ଖରେ ବିସର୍ଜନ କରାଗଲା । ଉକ୍ତ ଦିନ ୧୯୫୩ ମସିହା ଭସାଣି
ଉତ୍ସବରେ ମହାବୀର ଆସ୍ଥାନ ଲକ୍ଷ୍ମୀ ମେଢ ଯୋଗଦେଲ ନାହିଁ ଏବଂ
[illegible] ମସିହାଠାଏ ନିଜର ଶୋଭାଯାତ୍ରାରେ ନଯାଇ ଏକଲ ଗଡ
[illegible]ରେ ତାଙ୍କର ଶୋଭାଯାତ୍ରା କରୁଥିଲେ ।

ଯାହାହେଉ ପ୍ରତିବର୍ଷ ଗୋଟିକ ପରେ ଗୋଟିଏ ଲକ୍ଷ୍ମୀପୂଜା
ଅନୁଷ୍ଠାନ ସହରରେ ଭିନ୍ନ ଭିନ୍ନ ସାହିରେ ଗଢି ଉଠିଲା ଏବଂ ସାହି
ମାନଙ୍କର ପୂଜା ଅଞ୍ଚଳକୁ ନାମିତ କରିବା ଆବଶ୍ୟକ ପଡ଼ିଲା । ୧୯୫୮
ବେଳକୁ ଢେଙ୍କାନାଳରେ ଆଠଗୋଟି ସ୍ଥାନରେ ଲକ୍ଷ୍ମୀପୂଜା ଆରମ୍ଭ
ହୋଇ ସାରିଥିଲା । ତେଣୁ ୧୯୫୪ ବା ୧୯୫୫ରେ ଶ୍ରୀ ନାରାୟଣ
ମିଶ୍ରଙ୍କ ବାସଭବନରେ ଆଠ ଗୋଟି ଯାକ ଲକ୍ଷ୍ମୀପୂଜା ମେଢ଼ର
କର୍ମକର୍ତ୍ତା ମାନଙ୍କର ଗୋଟିଏ ବୈଠକ ହୋଇ ଭସାଣି ଉତ୍ସବରେ
ଶୃଙ୍ଖଳା ରକ୍ଷା ଲାଗି ଆଲୋଚନା ହୋଇଥିଲା । ସେଦିନ ନିଷ୍ପତ୍ତି
ଅନୁଯାୟୀ ଢେଙ୍କାନାଳ ସହରକୁ ଛଅଭିନ୍ନ ବଜାରରେ ନାମିତ କରାଗଲା ।
ଅବଶ୍ୟ ସେତେବେଳକୁ ମହିଳଗଡର ନାମ ମିନା ବଜାର ଓ ଜୁବୁଲି
ଟାଉନ୍ ଅଞ୍ଚଳକୁ ଲକ୍ଷ୍ମୀବଜାର ନାମରେ ନାମିତ କରାଯାଇ ସାରିଥିଲା ।
ନାରାୟଣ ମିଶ୍ରଙ୍କ ପ୍ରସ୍ତାବ କ୍ରମେ ସାଅନ୍ତ ସାହି ଅଞ୍ଚଳର ନାମ
ଜବାହାର ଚୌକ ବୋଲି ଗ୍ରହଣ କରାଗଲା । ସେଦିନୁ ଆଜିଯାଏ ପୂଜା
ଜବାହାର ଚୌକରେ ହେଉଅଛି ।

ଓଁ ପାଶାକ୍ଷ ମାଳିକା ମ୍ଭୋଜ-ଶୃଣିଭିର୍ଯ୍ୟାମ ସୌମ୍ୟୋଃଯୂଂ
ପଦ୍ମାସନା ସ୍ଥାଧାସୁତେ ଶ୍ରିୟଂ ତ୍ରୈଲୋକ୍ୟମାତରଂ
ଗୌରବର୍ଣ୍ଣାଂ ସୁରୂପାଞ୍ଚ ସର୍ବାଲଙ୍କାର ଭୂଷିତାମ୍
ରୌକ୍ମ ପଦ୍ମ ବ୍ୟଗ୍ରକାରାଂ ବରଦାଂ ଦକ୍ଷିଣେନତୁ ।

—*—

# ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା
## ଢେଙ୍କାନାଳ

ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା, ଢେଙ୍କାନାଳ ଜିଲ୍ଲାର ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରଙ୍କୁ ଚିହ୍ନଟ କରି ସେମାନଙ୍କର ଅର୍ଥନୈତିକ ଉନ୍ନତି ପାଇଁ ବିଭିନ୍ନ ବ୍ୟବସ୍ଥା ଗ୍ରହଣ କରିଛନ୍ତି ।

ଏହି କାର୍ଯ୍ୟକ୍ରମ ଦ୍ୱାରା ସପ୍ତମ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ବର୍ଷ ୧୯୮୫-୮୬ରେ ୧୧,୪୭୮ ପରିବାରଙ୍କୁ କୃଷି, ପଶୁପାଳନ ଓ କ୍ଷୁଦ୍ର ବ୍ୟବସାୟରେ ଉପକୃତ କରାଯାଇଅଛି । ସେହିପରି ଗ୍ରାମୀଣ ଦରିଦ୍ରତମ ପରିବାର ମାନଙ୍କ ଅର୍ଥନୈତିକ ଉନ୍ନତି ପାଇଁ ବିଭିନ୍ନ ଯୋଜନାରେ ୫୦୦୮ ପରିବାରଙ୍କୁ ସାହାଯ୍ୟ ଦିଆଯାଇଅଛି ।

ଜାତୀୟ ଗ୍ରାମାଞ୍ଚଳ ନିଯୁକ୍ତି ଯୋଜନା ଓ ଗ୍ରାମ୍ୟ ଭୂମିହୀନ ନିଯୁକ୍ତି ଯୋଜନାରେ ଯଥାକ୍ରମେ ୬.୨୧ ଲକ୍ଷ ଓ ୬.୧୮ [illegible] ଶ୍ରମ ଦିବସ ସୃଷ୍ଟି ହୋଇଅଛି ।

ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପ୍ରତ୍ୟେକ ପରିବାରଙ୍କୁ ସାହାଯ୍ୟ କରି ସେମାନଙ୍କର ଉନ୍ନତି ବିଧାନ କରିବା ଏହି ସଂସ୍ଥାର ଏକମାତ୍ର ଲକ୍ଷ୍ୟ । ଏଥିରେ ଜିଲ୍ଲାବାସୀଙ୍କର ସହଯୋଗ ଓ ସହାନୁଭୂତି ଆମର କାମନା ।

ସ୍ୱା-**ବଟକୃଷ୍ଣ ଦାସ**
ସଂପାଦକ
ଅଧିକାରୀ, ଢେଙ୍କାନାଳ

ସ୍ୱା-**ଅର୍ଦ୍ଧେନ୍ଦୁ ଶେଖର ଷଡ଼ଙ୍ଗୀ**
ସଭାପତି
ଜିଲ୍ଲାପାଳ, ଢେଙ୍କାନାଳ

## ଢେଙ୍କାନାଳର ସିଦ୍ଧ ବଳରାମ ମନ୍ଦିର
## ଓ ଜଗନ୍ନାଥ ମନ୍ଦିର



(ଢେଙ୍କାନାଳ ଶ୍ରୀ ଶ୍ରୀ ମହାଲକ୍ଷ୍ମୀ ପୂଜା ଶେଷରେ ସମସ୍ତ ପୂଜା ପ୍ରତିଷ୍ଠାନର ମେଢ଼ ସମୂହ ମଧ୍ୟାହ୍ନ ବେଳକୁ ଏହି ମନ୍ଦିର ପ୍ରଦର୍ଶନ କରି ରାଜବାଟି ବାଟେ ନିକଟ ଉପାଣି ଶୋଭା ଯାତ୍ରାରେ ଯାଆନ୍ତି )

Published and Edited by Sri Surendranath M... behalf of Mahalaxmi puja Souvenir ...
Dhenkanal and Printed at Mo...sa
Dhenkan...